ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ




*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୮ ବର୍ଷ, ତୃତୀୟ ସଂଖ୍ୟା**
**ଅକ୍ଟୋବର, ୨୦୧୮**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* : ୯୮୬୧୦୬୪୮୯୧,
୨୪୨୨୫୯୭, ୯୭୭୬୩୨୬୫୬୩
email :
nandaanasuya@hotmail.com
www:odisha publication.com

**ଅନ୍ୟାନ୍ୟ ବିଭାଗର ଲେଖକ--**
**ଜ୍ୟୋତି ନାୟକ, ରଶ୍ମି ସାହୁ, ରବିନାରାୟଣ, ସୂର୍ଯ୍ୟପ୍ରକାଶ**

### ଗଳ୍ପ ଓ ଜୀବନୀ



### କବିତା



### ଭ୍ରମଣ କାହାଣୀ



### ଜ୍ଞାନବିଜ୍ଞାନ



### ମନୋରଞ୍ଜନ



## ଆମ
## ଚିଠି ମୁଣିରୁ

**ପ୍ରାକ୍ଟିସିଂ ବାଳିକା ଉଚ୍ଚ ବିଦ୍ୟାଳୟ, ଫକୀରପୁରରୁ ରୋଜାଲିନ୍ ସାହୁ–**

୬୮ ବର୍ଷ ଧରି ସଂସାର ପତ୍ରିକା ଓଡ଼ିଆ ଭାଷା ସାହିତ୍ୟକୁ ବଜାୟ ରଖିବାର ଉଦ୍ୟମ ଜାରି ରଖିଛି । ସେଥିପାଇଁ ପତ୍ରିକାଟି ଓଡ଼ିଆ ଜାତିର ଏକ ଉଜ୍ଜ୍ୱଳ ତାରକା ସଦୃଶ । ପତ୍ରିକାଟି ଦୀର୍ଘଜୀବୀ ହେଉ–ଏତିକି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

**ଏ ମାସ ପ୍ରଚ୍ଛଦରେ ୪୨ ପୃଷ୍ଠାର୍ 'ସର୍ବଂସହା ଭୂଦେବୀ' ବିଷୟରୁ ଚିତ୍ର ପ୍ରଦତ୍ତ । ପ୍ରଚ୍ଛଦର୍ ପଛପଟେ ୨୦ ପୃଷ୍ଠାରେ 'ଗୋଲ୍‌ଡିକ୍ସ ଅଞ୍ଚଳ' ବିଷୟରୁ ଚିତ୍ର ପ୍ରଦତ୍ତ ।**

## ବିଶେଷ ସୂଚନା

ସଂସାର ପ୍ରକାଶନରେ ଆନୁଷଙ୍ଗିକ କାର୍ଯ୍ୟାବଳୀ ତଥା କାଗଜ ପ୍ରଭୃତିର ଦର ବୃଦ୍ଧି ଯୋଗୁଁ ଆମେ 'ସଂସାର'ର ମୂଲ୍ୟ ବୃଦ୍ଧି କରିବା ପାଇଁ ବାଧ ହେଉଛୁ । ଏହାକୁ ଆଖିଆଗରେ ରଖି 'ସଂସାର'ର ଖଣ୍ଡ ପ୍ରତି ପରିବର୍ତ୍ତିତ ମୂଲ୍ୟ ଟ୧୫/- ପରିବର୍ତ୍ତେ ଟ୧୬/- ଏବଂ ବାର୍ଷିକ ମୂଲ୍ୟ ଟ୧୨୦/- ପରିବର୍ତ୍ତେ ଟ ୧୫୦/- ରଖିଛୁ । ଏହି ପରିବର୍ତ୍ତିତ ମୂଲ୍ୟ ଜାନୁୟାରୀ-୨୦୧୯ (ନୂଆବର୍ଷ ) ଠାରୁ ଲାଗୁ କରାଯିବ । ଏଥିପାଇଁ ଆମେ ଆମର ଗ୍ରାହକ ତଥା ଏଜେଣ୍ଟମାନଙ୍କ ସହଯୋଗର ଆଶା ରଖୁଛୁ ।

 **ଶ୍ରଦ୍ଧାଞ୍ଜଳି** 

ପୂର୍ବତନ ଶିକ୍ଷାମନ୍ତ୍ରୀ, ସାରସ୍ୱତ ସାଧକ ତଥା ଆମ ପତ୍ରିକା 'ସଂସାର'ର ପୃଷ୍ଠପୋଷକ ଯଦୁନାଥ ଦାଶ ମହାପାତ୍ରଙ୍କର ଅଗଷ୍ଟ ୨୧ ତାରିଖରେ ପରଲୋକ ଘଟିଛି । ସଂସାର ପତ୍ରିକାର ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦଙ୍କର ସେ ଅତ୍ୟନ୍ତ ପ୍ରିୟ ଥିଲେ । ନନ୍ଦଙ୍କର ଅବର୍ତ୍ତମାନରେ ମଧ୍ୟ ସେ ମୃତ୍ୟୁ ପର୍ଯ୍ୟନ୍ତ ଆମକୁ ସୁବିଧା, ଅସୁବିଧାରେ ସହଯୋଗ କରିଆସୁଥିଲେ । ରାମକୃଷ୍ଣ ନନ୍ଦ ସ୍ମୃତି ପରିଷଦର ସେ ଉପଦେଷ୍ଟା ଥିଲେ । ଆମ ପତ୍ରିକା ପ୍ରତି ତାଙ୍କର ଅକୁଣ୍ଠ ଅବଦାନ ଆମକୁ ଚିରଋଣୀ କରି ରଖିବ । ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା ପୂର୍ବକ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

**--'ସଂସାର' ପରିବାର**

୧୯୯୪ ଅକ୍ଟୋବର ୨୮ ତାରିଖରେ ପ୍ରତିଷ୍ଠାତା ରାମକୃଷ୍ଣ ନନ୍ଦ 'ସଂସାର' ଛାଡି ଚାଲିଗଲେ । ତା ପରଠାରୁ ୨୪ ବର୍ଷ ଧରି 'ସଂସାର' ଗତି କରି ଚାଲିଛି ଆମର ପ୍ରିୟ ସଂସାରପ୍ରେମୀ ପାଠକ, ଲେଖକ, ଗ୍ରାହକ ଓ ଏଜେଣ୍ଟ୍‌ମାନଙ୍କର ପ୍ରେରଣା ଓ ସହେଯାଗକୁ ପାଥେୟ କରି ।



ପୂଜ୍ୟ ନନ୍ଦଙ୍କର ଆଶୀର୍ବାଦ ଏହିଭଳି ସଂସାର ପରିବାରକୁ ପଥ ଦେଖାଇ ଚାଲିଥାଉ– ପ୍ରତିଷ୍ଠାତାଙ୍କ ଦେହାନ୍ତ ଦିବସରେ ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା ।

**--'ସଂସାର' ପରିବାର**

# ଶାନ୍ତି ପରଶ ଧରା ପରେ

ଶ୍ରୀ ନଦୀୟା ବିହାରୀ ମହାନ୍ତି

ଦଶରା’ ଆସିଛି
ପସରା ମେଲାଇ
ହରଷ ଭରି ଏ ଧରାପରେ,
ମା’ ଦଶଭୁଜା
ବାବା ଭୋଳାନାଥ
ପୂଜା ପାଉଛନ୍ତି ଘରେ ଘରେ ।୧ ।
କାଶତଣ୍ଡି ଫୁଲ
ଶରତେ ମରତେ
ଧବଳ ସୁନ୍ଦର ଶୋଭା ଭରେ,
ଭରା ଆଜିପରା
ପଲ୍ଲୀଠୁଁ ନଗର,
ମା’ ଭବାନୀଙ୍କ ଜୟ ସୁରେ ।୨ ।
ଶକତି ଦାୟିନୀ
ଆଳସ୍ୟ ନାଶିନୀ
ଶକତି ଭରନ୍ତି ପୁରେ ପୁରେ,
ସାରା ବରଷଟା
ଭରିଦେଇ ମା’
ଧରିତ୍ରୀ ମାତାଙ୍କୁ ଶସ୍ୟ ଭାରେ ।୩ ।
ସେ ଶସ୍ୟ ସଂଭାର
ଶକ୍ତି ସଂଚରି,
ଜନ, ମନ, ପ୍ରାଣ ହୃଦୟରେ,
ମହାଶକତିରେ
ହୋଇ ପରିଣତ
ଅରି ବିନାଶଇ ଧରା ପରେ ।୪ ।
ଏତିକି ମିନତି
ଦଶ’ରା ପରବେ
ମା’ ଭଗବତୀ ପଦତଳେ,
ତୋର କୃପା ଦୃଷ୍ଟି
ଢାଳି ମା’ ସତତ
ଶାନ୍ତି ପରଶ ଧରା ପରେ ।୫ ।

ତଳତେଲେଙ୍ଗା ବଜାର, କଟକ-୯

# ମା' ତୁମେ ଆସିବ ବୋଲି

ଶ୍ରୀ ଜଗନ୍ନାଥ ସାମଲ

ଶରତ ରାଣୀଟି ପଣତ ଉହାଡ଼େ
କଣେଇ କଣେଇ ଚାହୁଁଚି
କଳା ବାଦଲର କେବେ ଛାଇଖେଳ
ସନ୍ତରପଣରେ ଦେଖୁଛି ।
ଯୂଇ, ଯାଇ, ମଲ୍ଲୀ, ହେନା, କାଶତଣ୍ଡି
କଦମ୍ବ ସା'ନାଇ ଫୁଙ୍କୁଛି
ଜୀବନ ଯମୁନା ପରିହେବ ବୋଲି
ମା'କୁ ଅନେଇ ବସିଛି ।
ସ୍ୱାର୍ଥର ପାଇଁ ଭାଇ ବୁକେ ଭାଇ
ହତିଆର ବେକେ ଦଉଚି
ଲାଞ୍ଚ, ମିଛ, ଜୁଆଚୋରିର ଦାନବ
ଆକାଶକୁ ମୁଣ୍ଡ ଟେକିଛି ।
ଅଶାନ୍ତ କୁହୁଡ଼ି ମାଡ଼ି ମାଡ଼ି ଆସି
ଅଚିରେ ଯାଉଛି ବରଷି
ଏ ସମୟେ ମା' ଅବତରି ଆସି
ଏ ଧରାକୁ ଦେ ଉଶ୍ୱାସି ।
କୃତାଞ୍ଜଳି ପୁଟେ କରୁଛି ମିନତି
ତୋ ଚରଣେ ଦେ' ଶରଣ
ଅଜ୍ଞାନ ତମସା ଦୂରକରି ଦେଇ
ଦୁଷ୍ଟକୁ କର ମା' ଦଳନ ।

ତୁଳସୀପୁର, ଭଣ୍ଡାରି ପୋଖରୀ, ଭଦ୍ରକ





# ମାଆ ଆସୁଛନ୍ତି ବୋଲି

ଶ୍ରୀ ସୁମନ୍ତ ମହାରଣା

ବଜାରେ ବଜାରେ ବାଇଦ ବଜା
ଆଶ୍ୱିନ ହୋଇଛି ଫୁଲରେ ସଜା
ପସରା ଯାଇଛି ମେଲି
ପିଠାପଣା ଖାଲି ମହକି ଯାଉଛି
ମାଆ ଆସୁଛନ୍ତି ବୋଲି ।

ତୁଳାଭିଣା ମେଘ ଆକାଶ ଉଡ଼େ
ସୁନାର ଫସଲ କ୍ଷେତରେ ଖେଳେ
ଶୀତ ଆସେ ଧୀରେ ଚାଲି
ଗଙ୍ଗଶିଉଳିଟି ମୁରୁକି ହସୁଛି
ମାଆ ଆସୁଛନ୍ତି ବୋଲି ।

ବିଜୁଳିନାନି ବାପଘରକୁ ତା ଆସିଛି ବୁଲି
ଗାଆଁ ଝିଅ ହେଲେ ମେଳି
ଧୁଡୁକି ନାଚରେ ଗାଁ ଉଚ୍ଛୁଳିବ
ମାଆ ଆସୁଛନ୍ତି ବୋଲି ।

ଲିଟିଲ୍ ଷ୍ଟାର ଗ୍ରୁପ୍, ପାଟପୁର, ନିମାପଡ଼ା, ପୁରୀ-୭୫୨୦୧୬

# ଖାଲି ଚଉକି

## ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ବହୁତ ଦିନ ତଳର କଥା । ଥିଲେ ଜଣେ ବ୍ୟକ୍ତି । ତାଙ୍କର ଦେହ ବହୁତ ଖରାପ ଥିଲା । ସେ କିନ୍ତୁ ଥିଲେ ଜଣେ ଖ୍ରୀଷ୍ଟିଆନ୍ । ଖ୍ରୀଷ୍ଟିଆନ୍‌ମାନେ ଅତି ଅସୁସ୍ଥ ହୋଇ ପଡ଼ିଥିଲେ ନିକଟରେ ଥିବା ଗୀର୍ଜା ଧର୍ମଯାଜକ ତାଙ୍କ ଘରକୁ ଆସନ୍ତି । ତାଙ୍କ ବିଛଣା ପାଖରେ ଠିଆ ହୋଇ ତାଙ୍କର ଶୁଭ ମନାସି ଯୀଶୁଖ୍ରୀଷ୍ଟଙ୍କୁ ପ୍ରାର୍ଥନା କରିଥା'ନ୍ତି ।

ଦିନେ ବ୍ୟକ୍ତିଙ୍କ ଝିଅ ଯାଇ ଗୀର୍ଜାରେ ପହଞ୍ଚିଲେ । ସେଠାକାର ଧର୍ମଯାଜକ ବା ପାଦ୍ରୀଙ୍କୁ କହିଲେ, "ମହାଶୟ ! ମୋର ପିତା ଅତି ଅସୁସ୍ଥ । ଆପଣ ଦୟାକରି ଆମ ଘରକୁ ଆସି ମୋର ପିତାଙ୍କ ସହ ଯୀଶୁଖ୍ରୀଷ୍ଟଙ୍କୁ ପ୍ରାର୍ଥନା କରିବା ନିମନ୍ତେ ଆପଣଙ୍କୁ ଅନୁରୋଧ ଜଣାଉଛି ।" ଏହା ଶୁଣି ଧର୍ମଯାଜକଜଣଙ୍କ ଖୁବ୍ ଖୁସି ହୋଇଗଲେ । ପହଞ୍ଚିଗଲେ ସେହି ଅସୁସ୍ଥ ବ୍ୟକ୍ତିଙ୍କ ଘରେ ।

ସେତେବେଳକୁ ବ୍ୟକ୍ତିଜଣଙ୍କ ଖଟ ଉପରେ ଶୋଇଥିଲେ । ମୁଣ୍ଡକୁ ଆଉଜେଇ ରଖିଥିଲେ ଦୁଇଟି ତକିଆ ଉପରେ । ତାଙ୍କ ଖଟ ପାଖରେ ଥୁଆ ହୋଇଥିଲା ଖାଲି ଚଉକିଟିଏ । ଖାଲି ପଡ଼ିଥିବା ଚଉକିଟିକୁ ଦେଖି ଧର୍ମଯାଜକ ଭାବିଲେ ସେ ଆସିବେ ବୋଲି ବୁଢ଼ା ରୋଗୀଜଣଙ୍କ ବୋଧହୁଏ ଆଗରୁ ଖବର ପାଇସାରିଛନ୍ତି । ସେଥିପାଇଁ ସେ ବସିବା ନିମନ୍ତେ ଖଟ ପାଖରେ ରଖିଛନ୍ତି ଚଉକିଟିକୁ । ତଥାପି ସେ ରୋଗୀଙ୍କୁ ପଚାରିଲେ, "ମୁଁ ଆସିବି ବୋଲି ଆପଣ ଜାଣିଥିଲେ ବୋଧହୁଏ ?"

କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ ରୋଗୀଜଣଙ୍କ ଉତ୍ତରଦେଲେ, "ନାଇଁ ତ, ଆପଣ ଆସିବେ ବୋଲି ମୁଁ ଆଗରୁ ଜାଣି ନ ଥିଲି । ତେବେ ଆପଣ କିଏ ମୋତେ ଟିକିଏ ଆଗରୁ କୁହନ୍ତୁ ତ !"

ଧର୍ମଯାଜକ ଉତ୍ତରଦେଲେ, "ଆଜ୍ଞା ! ମୁଁ ଏଠାକୁ ଏବେ ଆସିଛି । ମୁଁ ହେଉଛି ଏଠାକାର ଗୀର୍ଜାର ଧର୍ମଯାଜକ । ଆପଣଙ୍କ ଖଟ ପାଖରେ ପଡ଼ିଥିବା ଖାଲି ଚଉକିଟିକୁ ଦେଖି ମୁଁ ଭାବିଲି ଯେ ମୁଁ ଆପଣଙ୍କ ପାଖକୁ ଆସୁଛି ବୋଲି ଆପଣ ସମ୍ଭବତଃ ଜାଣିଛନ୍ତି ।"

ରୋଗୀଜଣଙ୍କ ବଡ଼ ନମ୍ର ଭାବରେ କହିଲେ, "ଓଃ, ଏହି ଚଉକି ? ଆଜ୍ଞା ! ଆପଣ ଦୟାକରି ଏଇ କୋଠରିର କାବାଟଟିକୁ ଟିକିଏ ବନ୍ଦ କରିଦେଇ ପାରିବେ ?"

ଏହା ଶୁଣି ଧର୍ମଯାଜଣଙ୍କ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ତଥାପି ସେ ଯାଇ କୋଠରିର କବାଟ ବନ୍ଦ କରିଦେଲେ ।



ତା'ପରେ ରୋଗୀଜଣଙ୍କ ଆରମ୍ଭ କଲେ, "ଆଜ୍ଞା ! ଏ କଥା ମୁଁ କାହାରିକୁ କହିନି । ଏପରକି କହିନି ମୋ ଝିଅକୁ ମଧ୍ୟ । ଦେଖନ୍ତୁ, କିପରି ପ୍ରାର୍ଥନା କରିବାକୁ ହୁଏ, ମୋ ଜୀବନସାରା ବି ମୁଁ ଜାଣିନି । ମୁଁ ଗୀର୍ଜାକୁ ଯାଏ । ସେଠାରେ ଧର୍ମଯାଜକ ଯାହା କୁହନ୍ତି ମୁଁ ଶୁଣେ । ମାତ୍ର ଯାହା ଶୁଣେ, ତାହା ମୋର ଗୋଟିଏ କାନରେ ପଶି ଅନ୍ୟ କାନ ବାଟେ ବାହାରିଯାଏ ।"

"ପ୍ରାର୍ଥନା କରିବା ପାଇଁ କିଛି କିଛି ଚେଷ୍ଟା କଲି । ହେଲେ ଏଥିରେ ସଫଳ ହୋଇପାରିଲିନି । ତେଣୁ ପ୍ରାର୍ଥନା କରିବା ଛାଡ଼ିଦେଲି, ତେବେ ଶୁଣନ୍ତୁ କ'ଣ ଘଟିଲା ଚାରିବର୍ଷ ତଳେ । ମୋର ସବୁଠାରୁ ଅନ୍ତରଂଗ ବନ୍ଧୁ ଆସି ପହଞ୍ଚିଲେ ମୋ' ପାଖରେ । ସେ ମୋତେ ସମ୍ବୋଧନ କରି କହିଲେ, "ଜୋ ! ଦେଖ ପ୍ରାର୍ଥନା କରିବାଟା ଅତି ସହଜ । ପ୍ରାର୍ଥନାଟା ହେଲା ଯୀଶୁଖ୍ରୀଷ୍ଟଙ୍କ ସହ ଅନ୍ତରଙ୍ଗ କଥାବାର୍ତ୍ତା । ମୁଁ ଯାହା କହୁଛି, ଏଣକି ସେହିପରି କର । ନିଜେ ଗୋଟିଏ ଚଉକି ଉପରେ ବସ । ତୁମ ସାମନାରେ ରଖ ଖାଲି ଚଉକିଟିଏ । ମନରେ ଗଭୀର ବିଶ୍ୱାସ ରଖି ଯୀଶୁଖ୍ରୀଷ୍ଟ ସେହି ଚଉକି ଉପରେ ବସିଛନ୍ତି ବୋଲି ଧରିନିଅ । କାରଣ ପ୍ରଭୁ ଯୀଶୁ ତ ନିଜେ କହିଛନ୍ତି– ମୁଁ ସବୁବେଳେ ତୁମ ସହ ରହିଛି । ତେଣୁ ତୁମେ ମୋ ସାଙ୍ଗରେ ଯେପରି ଭାବରେ କଥାବାର୍ତ୍ତା କରୁଛ, ଠିକ୍ ସେହିପରି ଭାବରେ ପ୍ରଭୁ ଯୀଶୁଙ୍କ ସାଙ୍ଗରେ ତୁମର ଭଲମନ୍ଦ, ଦୁଃଖସୁଖ ହୋଇପାରିବ । ତୁମର ବିଶ୍ୱାସ ଥିଲେ ତୁମେ ଯୀଶୁଙ୍କ ଉତ୍ତର ମଧ୍ୟ ଶୁଣିପାରିବ । ଏହା ହିଁ ତ ହେଉଛି ସବୁଠାରୁ ସରଳ ପ୍ରାର୍ଥନା ।"

"ସେହିଦିନଠାରୁ ମୁଁ ସେହିପରି କରିବା ପାଇଁ ଚେଷ୍ଟା କଲି । ସତରେ ମୋତେ ଖୁବ୍ ଭଲଲାଗିଲା । ଏତେ ଭଲଲାଗିଲା ଯେ ଏଣିକି ପ୍ରତିଦିନ ଏକାଧିକ ଥର ମୁଁ ସେହିପରି କରୁଛି । ଅବଶ୍ୟ ମୁଁ ଏହା କରୁଛି ଲୁଚେଇକରି । କାରଣ ଗୋଟିଏ ଖାଲି ଚଉକି ସାଙ୍ଗରେ ମୁଁ କଥାବାର୍ତ୍ତା ହେଉଛି ବୋଲି ମୋ ଝିଅ ଦେଖିପକାଇଲେ ହୁଏତ ଛାନିଆ ହୋଇପଡ଼ିବ କିମ୍ବା ମୁଁ ପାଗଳ ହୋଇଗଲିଣି ଭାବି ମୋତେ ଡାକ୍ତରଖାନାରେ ଭର୍ତ୍ତି କରିଦେବ ।"

ରୋଗୀଙ୍କ ତୁଣ୍ଡରୁ ଏହା ଶୁଣି ଧର୍ମଯାଜକ ଅତି ଅଭିଭୂତ ହୋଇ ପଡ଼ିଲେ । ତାଙ୍କ ଆଖିରେ ଲୁହ ଜକେଇଆସିଲା । ସେ ରୋଗୀଜଣଙ୍କୁ ଉତ୍ସାହ ଦେଇ ସେହିପରି ପ୍ରାର୍ଥନା କରିବା ପାଇଁ କହିଲେ ଏବଂ ନିଜେ ଗୀର୍ଜାକୁ ଫେରିଗଲେ ।

ଏହାର ଦୁଇଦିନ ପରେ ଝିଅ ଯାଇ ପୁଣି ପହଞ୍ଚିଗଲା ଧର୍ମଯାଜକଙ୍କ ନିକଟରେ । କହିଲା ଯେ ସେଦିନ ଉପରବେଳା ତା' ପିତାଙ୍କର ମୃତ୍ୟୁ ହୋଇଯାଇଛି ।

ଧର୍ମଯାଜକ ପଚାରିଲେ, "ସେ କଅଣ ଶାନ୍ତିରେ ଶେଷନିଃଶ୍ୱାସ ତ୍ୟାଗ କଲେ ?"

ଝିଅ କହିଲା,"ହଁ ମହାଶୟ ! ସେଦିନ ଉପରବେଳା ଦୁଇଟା ସମୟରେ ସେ ମୋତେ ତାଙ୍କ ପାଖକୁ ଡାକିଲେ । କୌତୁକିଆ କଥା କହି ମୋତେ ହସାଇଲେ । ତା'ପରେ ମୋ ଗାଲରେ ଚୁମାଟିଏ ଦେଇଦେଲେ । ଗୋଟିଏ କାମରେ ମୁଁ ଘରୁ ବାହାରିଯାଇ ଗୋଟିଏ ଘଣ୍ଟା ପରେ ଫେରିଆସିବା ବେଳକୁ ସବୁ ଶେଷ । ତାଙ୍କର ମୃତ୍ୟୁ ହୋଇଯାଇଥିଲା ମୁଁ ବାହାରକୁ ଯାଇଥିବାବେଳେ । କିନ୍ତୁ, ମହାଶୟ ! ମୁଁ ଦେଖିଲି ବଡ଼ ଆଶ୍ଚର୍ଯ୍ୟ ଘଟଣାଟିଏ । ତାଙ୍କ ଖଟ ପାଖରେ ସେ ରଖିଥିଲେ ଖାଲି ଚଉକିଟିଏ । ସେ ଖଟ ଉପରୁ ନଇଁପଡ଼ି ସେଇ

# ସିଂହ ଓ ବିଲୁଆ କଥା

ଶ୍ରୀ ଶିବ ମିଶ୍ର



ଗୋଟିଏ ବଣରେ ସିଂହଟିଏ ରହୁଥିଲା । ଦିନେ ସିଏ ନଈକୁ ପାଣି ପିଇବା ପାଇଁ ଗଲାବେଳେ କାଦୁଅରେ ଲାଖିଗଲା । ସେଥିରୁ ମୁକୁଳିବା ପାଇଁ ଚେଷ୍ଟାକଲେ ବି ପାରିଲାନି । ତେଣୁ ତାକୁ ଭୋକରେ ରହିବାକୁ ପଡ଼ିଲା । ସିଏ ଯେତେ ଗର୍ଜନ କଲେ ବି ସେ ଶବ୍ଦ କେହି ଶୁଣିପାରିଲେନି କି ତା'କୁ ଉଦ୍ଧାର କରିବାକୁ ଆସିଲେନି ।

ଦିନେ ଗୋଟିଏ ବିଲୁଆ ପାଣି ପିଇବା ପାଇଁ ସେହି ନଈକୁ ଆସିଲା । କାଦୁଅରେ ଲାଖିଯାଇଥିବା ସିଂହକୁ ଦେଖି ବିଲୁଆ କହିଲା– ଘଟଣା କ'ଣ ? ତୁମେ ଏଠାରେ ଏପରି ରହିଛ କାହିଁକି ? ସିଂହ ତା'ର ଦୁଃଖର କଥା କହିଲା । ତା' କଥା ଶୁଣି ବିଲୁଆ ସିଂହକୁ ଉଦ୍ଧାର କରିବା ପାଇଁ ବାଟଟିଏ ତିଆରି କଲା । ହେଲେ ସିଂହ କାଦୁଅରୁ ଉଠିପାରିଲା ନାହିଁ । ସିଂହ କିଛି ଦିନ ହେଲା ଗୋଟିଏ ପ୍ରକାରେ ଭଙ୍ଗୀରେ ଠିଆ ହୋଇ ରହିଥିବାରୁ ତା' ଶରୀର ସେମିତି ଟାଣ ହୋଇଯାଇଥିଲା । ତେବେ ବିଲୁଆ ହାରି ନ ଯାଇ ସିଂହକୁ କାଦୁଅରୁ ଉଦ୍ଧାର କରିବା ପାଇଁ ଅନ୍ୟ ଉପାୟ ଫାନ୍ଦିଲା । ଶେଷରେ ସିଂହ ଉଦ୍ଧାର ପାଇଲା ।

ଅନେକ ଦିନ କଷ୍ଟ ପାଇଲା ପରେ ସିଂହ କାଦୁଅରୁ ମୁକୁଳିଥିବାରୁ ଖୁବ୍ ଖୁସି ହୋଇଯାଇଥିଲା । ସେ ବିଲୁଆକୁ କହିଲା– ତୁମର ସଦୟ ସାହାଯ୍ୟ ପାଇଁ ଏବଂ ଉପଯୁକ୍ତ କାର୍ଯ୍ୟପନ୍ଥା ପାଇଁ ମୁଁ ତୁମକୁ ଅନ୍ତରର ସହିତ ଧନ୍ୟବାଦ ଜଣାଉଛି । ତୁମେ ଯଦି ମୋ ସହିତ ରହିବାକୁ ରାଜି ହେବ, ତେବେ ମୁଁ ବହୁତ ଖୁସି ହେବି । ମୁଁ ପ୍ରତିଜ୍ଞା କରି କହୁଛି ଯେ ତୁମକୁ ମୋ ଶିକାରରୁ ଖାଦ୍ୟ ଯୋଗାଇବି । ବିଲୁଆ ସିଂହର କଥା ମାନିଲା । ତା'ପାଖରେ ରହିଲା । ସେମାନେ ଖାଦ୍ୟ ଭାଗ କରି ଖାଇଲେ । ଆନନ୍ଦରେ ରହିଲେ । ସମୟ ଗଡ଼ିଲା । ସେମାନଙ୍କର ପରିବାର ବଢ଼ିଲା । ପିଲାଛୁଆ ବଡ଼ ହେଲେ ।

ଦିନେ ସିଂହର ସ୍ତ୍ରୀ ତା'ର ପିଲାମାନଙ୍କୁ କହିଲା ଯେ ଗୋଟିଏ ବିଲୁଆ ସହିତ ସିଂହ ବନ୍ଧୁତ୍ୱକୁ ପସନ୍ଦ କରେନାହିଁ । ସିଂହର ପିଲାମାନେ ବିଲୁଆର ପିଲାମାନଙ୍କୁ ସେ କଥା କହିଲେ । ବିଲୁଆ ପିଲାମାନେ ଧାଇଁଯାଇ ସେମାନଙ୍କ ମାଆଙ୍କୁ ଏକଥା ଶୁଣାଇଲେ । ମାଆ ବିଲୁଆ ଏହି କଥା ତା'ର ସ୍ୱାମୀକୁ କହିଲା ।

---

ଚଉକି ଉପରେ ମୁଣ୍ଡ ରଖି ଶୋଇଯାଇଥିଲେ ସବୁଦିନ ପାଇଁ ।"

ଦେଖ, ଆମେ ସମସ୍ତେ ମଧ୍ୟ ଏହିପରି ଭାବରେ ପ୍ରାର୍ଥନା କରିପାରିବା । ନିଜ ପ୍ରଭୁଙ୍କୁ ଡାକିପାରିବା । ଆମର ଭଲମନ୍ଦ କଥା ତାଙ୍କୁ କହି ତାଙ୍କର ସାହାଯ୍ୟ ଭିକ୍ଷା କରିପାରିବା ।

'ଅଭୀପ୍ସା', ସେକ୍ଟର-୬, ପ୍ଲଟ ନଂ-୧୧୩୧,
ଅଭିନବ ବିଡ଼ାନାସୀ, କଟକ- ୭୫୩୦୧୪

ଏ କଥା ଶୁଣି ବିଲୁଆ ରାଗିଗଲା । ସିଏ ସିଧା ଯାଇ ସିଂହ ପାଖରେ ପହଞ୍ଚିଲା । କହିଲା– ପ୍ରତିବଦଳରେ କିଛି ଆଶା ନ ରଖି ମୁଁ ତୁମକୁ ସାହାଯ୍ୟ କରିଥିଲି । ତୁମେ ମୋତେ ତୁମ ସହିତ ରହିବା ପାଇଁ କହିଲ । ତେଣୁ ମୁଁ ରହିଲି । ବର୍ତ୍ତମାନ ତୁମେ ଯେବେ ମୋତେ ଏଠାରେ ରଖିବା ଉଚିତ୍ ମଣୁନାହଁ, ତେବେ ମୋତେ ସିଧା ସିଧା କହିଦିଅ । ତୁମେ ତୁମ ସ୍ତ୍ରୀ ଓ ପିଲାଙ୍କ ଦ୍ୱାରା କହୁଛ କାହିଁକି ?

ବନ୍ଧୁ ବିଲୁଆର କଥା ଶୁଣି ସିଂହ ଆଶ୍ଚର୍ଯ୍ୟ ହୋଇଗଲା । କହିଲା– ହେ ମୋର ପ୍ରିୟ ବନ୍ଧୁ! ତୁମେ ଏପରି କ'ଣ କହୁଛ ? ତୁମ ସହିତ ରହିବାରେ ମୋର କୌଣସି ଅସୁବିଧା ନାହିଁ । ମୋତେ ବିଶ୍ୱାସ କର । ତୁମ ପ୍ରତି ମୋର ଖରାପ ଧାରଣା ନାହିଁ । ମୁଁ କଥା ଦେଉଛି ସିଂହୀ ସହିତ କଥା ହୋଇ ଏ ସମସ୍ୟାର ସମାଧାନ କରିବି ।

ବିଲୁଆ ବଡ଼ ଚତୁର । ସେ ଅବସ୍ଥା ବୁଝିପାରିଲା ଏବଂ ସିଂହକୁ କହିଲା– ମୁଁ ଜାଣେ ତୁମେ ଠିକ୍ କହୁଛ । ତେବେ ଆମେ ଏକାଠି ରହିବା ପାଇଁ ଆମ ପରିବାରର ସଦସ୍ୟମାନେ ସମର୍ଥନ କରିବେ ନାହିଁ । ତେଣୁ ଏହା ଭଲ ହେବ ଯେ ଆମେ ଆମ ଦୁଇ ପରିବାକୁ ଏକାଠି ରଖିବା ନାହିଁ । ଯଦିବା ଆମ ବନ୍ଧୁତ୍ୱ କାଏମ୍ ରହିବ, ଆମେ ପୂର୍ବ ପରି ଏକାଠି ଶିକାର କରିବା । ସିଂହ କିଛି ସମୟ ଚିନ୍ତାକଲା । ପରେ ଦୁଃଖର ସହିତ ଏହି ପ୍ରସ୍ତାବରେ ସମ୍ମତ ହେଲା ।

ଦୁଇ ପରିବାର ପରସ୍ପରଠାରୁ ଦୂରେଇଗଲେ । କିନ୍ତୁ ସିଂହ ଆଉ ବିଲୁଆର ବନ୍ଧୁତ୍ୱ ବଜାୟ ରହିଲା । ସେମାନେ ଅଧିକାଂଶ ସମୟ ଏକାଠି ହେଲେ । ଏକାଠି ଶିକାର କଲେ । ସେମାନେ ମଲା ଯାଏଁ ବନ୍ଧୁ ହୋଇ ରହିଲେ ।

ବାଣପୁର, ଖୋର୍ଦ୍ଧା

---

## ? ଧନ୍ଦା

୪ଟି ଅକ୍ଷରେ ନାମଟି ମୋହର
ହିନ୍ଦୁ ଭକ୍ତ ସବୁ କରେ ଆଦର ।
ପ୍ରଥମ ଦ୍ୱିତୀୟ ଦିଅ ମିଶାଇ
ଠାକୁରଙ୍କ ନାମ ଦିଅ ବୁଝାଇ ।
ଦ୍ୱିତୀୟ ତୃତୀୟ ଯୋଗ କରିଲେ
ଖାଇବା ଅର୍ଥକୁ ବୁଝାଏ ଭଲେ ।
ତୃତୀୟ ଚତୁର୍ଥ କରିବ ଯୋଗ
ଦିନ ପରେ ଦେଖ ସିଏ ଆସିବ ।
ଏହି ନାମଟିକୁ ଯିଏ କହିବ
ଶିବଙ୍କର ସିଏ କୃପା ପାଇବ ।

**ଜ୍ୟୋତି ନାୟକ,** ଅଷ୍ଟମ ଶ୍ରେଣୀ ଶୈଳଙ୍ଗ ନୋଡାଲ ଉ.ପ୍ରା. ବିଦ୍ୟାଳୟ

(ଉତ୍ତର ୨୬ ପୃଷ୍ଠାରେ)

# ଇଚ୍ଛା ପୂରଣ ପାଇଁ ଦେବତା ସାହାଯ୍ୟ କଲେ

ଶ୍ରୀ ସୁଧାଂଶୁ ଶେଖର ଦ୍ୱିବେଦୀ

ଏହା ଏକ ଚୀନ୍ ଲୋକକଥା । କେଉଁ କାଳରୁ ଚୀନ୍‌ବାସୀଙ୍କ ମୁହଁରୁ ଶୁଣିବାକୁ ମିଳୁଛି ।

ପ୍ରାୟତଃ ୭୦୦ବର୍ଷ ପୂର୍ବେ 'ୟୁଙ୍ଗଡ଼' ନାମକ ଜଣେ ୯୦ବର୍ଷର ବୃଦ୍ଧ ଥିଲେ । ସେ ନିଜର ପୁଅ-ବୋହୂ, ନାତି-ନାତୁଣୀ, ପଣନାତି-ପଣନାତୁଣୀମାନଙ୍କ ସହ ସୁଖ-ଦୁଃଖରେ ଦିନ ବିତାଉଥିଲେ; କିନ୍ତୁ ଗୋଟେ ବଡ଼ ଅସୁବିଧା ଥିଲା । ତାଙ୍କ ଘର ସମ୍ମୁଖରେ ଥାଇହାନ୍ ଓ ବାଂଗ୍‌କୁ ନାମକ ଦୁଇଟି ଉଚ୍ଚ ପାହାଡ଼ । ସେଇ ଦୁଇଟି ପାହାଡ଼ ପାଇଁ ତାଙ୍କ ଘରଲୋକେ ସହଜରେ ଯିବାଆସିବା କରି ପାରୁ ନ ଥାନ୍ତି । ଦୈନନ୍ଦିନ ଏଭଳି ଅସୁବିଧାରୁ ମୁକ୍ତି ପାଇବା ପାଇଁ ଦିନେ ୟୁଙ୍ଗଡ ନିଜ ପରିବାର ସମସ୍ତ ସଦସ୍ୟଙ୍କୁ ଏକଜୁଟ୍ କରାଇ କହିଲେ, "ଥାଇହାନ୍ ଓ ବାଂଗ୍‌କୁ ପାହାଡ଼ ପାଇଁ ଆମେମାନେ ଅନେକ ଅସୁବିଧାର ସମ୍ମୁଖୀନ ହେଉଛେ । ସିଧା ରାସ୍ତାରେ ନ ଯାଇ ଅନେକ ଘୂରାଫେରା ହୋଇ ଯାଉଛେ ଓ ଆସୁଛେ । ଯଦି ଆମେ ସମସ୍ତ ମିଳିମିଶି ସେହି ପାହାଡ଼ ଦୁଇଟିକୁ ଆମ ଘର ସମ୍ମୁଖରୁ ହଟେଇଦେବା, ତା'ହେଲେ ଆମମାନଙ୍କର ରାସ୍ତା ସୁଗମ ହୋଇଯିବ । ଏଭଳି ଅବରୋଧ ହଟିଗଲେ ଆଗାମୀ ପିଢ଼ି ପାଇଁ ମଧ୍ୟ ପଥ ସୁଗମ ହୋଇଯିବ । ସେଥିଲାଗି ତୁମେ ସବୁ ଏ କାର୍ଯ୍ୟ ପାଇଁ ସହମତ ଅଛ ତ ?"

ପୁଅ ଓ ନାତି-ନାତୁଣୀଙ୍କୁ ୟୁଙ୍ଗଡ଼ର ପ୍ରସ୍ତାବ ଉଚିତ୍ ମନେହେଲା । ସେମାନେ ସହମତି ଜଣେଇ ମୁଣ୍ଡ ହଲାଇଲେ । କିନ୍ତୁ ୟୁଙ୍ଗଡ଼ର ସ୍ତ୍ରୀ ଚିନ୍ତାରେ ପଡ଼ି କହିଲା, "ଏତେ ବଡ଼ ବଡ଼ ପାହାଡ଼କୁ ହଟାଇବା ଆମ ପକ୍ଷେ କେବେ ବି ସମ୍ଭବ ହେବନି । ତେଣୁ ଆମେମାନେ ଯେମିତି ଚଳୁଛେ, ଭବିଷ୍ୟତ ପିଢ଼ି ବି ସେଇମିତି ଚଳିଯିବେ । ତା'ପରେ ସେଥିରୁ ଯେଉଁ ପଥର ବାହାରିବ, ସେ ସବୁ କେଉଁଠି ରଖିବ ?"

ବୈଠକରେ ସଭିଙ୍କ ସହମତି କ୍ରମେ ନିଶ୍ଚିତ ହେଲା– ପାହାଡ଼ରୁ ଯେଉଁ ପଥର ବାହାରିବ, ସେସବୁ ଦୂର ସମୁଦ୍ରରେ ଫିଙ୍ଗାହେବ । ସେଇଠୁ ୟୁଙ୍ଗଡ଼ର ପରାମର୍ଶରେ ତାର ପରିବାର ଓ ସେ ନିଜେ ଅସାଧାରଣ କାର୍ଯ୍ୟ କରିବରାକୁ ଲାଗିପଡ଼ିଲେ । ପଡ଼ୋଶୀରେ ଥିବା ଜଣେ ବିଧବାର ୭ବର୍ଷର ପୁଅ ମଧ୍ୟ ଏଭଳି କାର୍ଯ୍ୟରେ ସହଯୋଗ କଲା ।

ୟୁଙ୍ଗଡ଼ ନିକଟରେ ଗୋଟିଏ ବେଲ୍‌ଚା, ଗୋଟିଏ କୋଦାଳ ଓ ଗୋଟିଏ ବାଉଁଶ ତିଆରି ପାଛିଆ ଥାଏ ପାହାଡ଼ ଓ ସମୁଦ୍ର ମଝିରେ ଅନେକ ଲମ୍ବା ରାସ୍ତା । ଗୋଟିଏ ସମୟରେ ସମୁଦ୍ରରେ ମାତ୍ର ଥରୁଟିଏ ପଥର ଫିଙ୍ଗା ହୋଇପାରିବ ।





ଅନେକ ସମସ୍ୟା ଭିତରେ ଗୋଟିଏ ମାସ ବିତିଗଲା । ତେବେ ବି ଦୁଇଟି ପାହାଡ଼ର ଉଚ୍ଚତା ଯେମିତିସେମିତି ଥାଏ । ଗ୍ରାମର ଅନେକ ଲୋକ ୟୁଙ୍ଗଡ଼ର କାର୍ଯ୍ୟକଳାପ ଦେଖି ତାଚ୍ଛଲ୍ୟରେ ହସିବାକୁ ଲାଗିଲେ । ତାକୁ ମୂର୍ଖମଣିଷ ବୋଲି ସମ୍ବୋଧନ କଲେ । ହେଲେ ୟୁଙ୍ଗଡ଼ କେବେ ହାରିଯିବା ଲୋକ ନ ଥିଲା । ଯେତେଦିନ ଲାଗିବ ଲାଗୁ, ସେ ସେହି ଦୁଇଟି ପାହାଡ଼କୁ ସ୍ଥାନାନ୍ତର କରିବା ପାଇଁ ନିଜ ପରିବାର ସହ ଅହରହ ଲାଗି ରହିଲା । ତା' ମନରେ ଦୃଢ଼ ବିଶ୍ୱାସ ଥାଏ ଦିନେ ନା ଦିନେ କାର୍ଯ୍ୟ ସଫଳ ହେବ । ତା'ର ଦୃଢ଼ ବିଶ୍ୱାସ, ସଂକଳ୍ପ ଓ ଶକ୍ତି ପାଖରେ ଗାଁଲୋକଙ୍କ ମୁହଁ ଧୀରେ ଧୀରେ ବନ୍ଦ ହୋଇଗଲା ।

ସେ ଦିନରାତି ଅହରହ ପରିଶ୍ରମ କରି ପାହାଡ଼ ଦୁଇଟି ଉଠେଇବା ପାଇଁ ପରିବାର ସହ ଲାଗି ରହିଲା । କେବେ କେବେ ପରିବାର ଲୋକେ ବିଶ୍ରାମ ନେଲେ ମଧ୍ୟ ସେ ଆଦୌ ବିଶ୍ରାମ ନେଉ ନ ଥିଲା । ଟାଇଁ ଟାଇଁ ଖରା ତାକୁ କାଟୁ ନ ଥିଲା କି ହାଡ଼ଫଟା ଶୀତ ତାକୁ ବାଧୁ ନ ଥିଲା । ଦୃଢ଼ ସଂକଳ୍ପ ଓ ଇଚ୍ଛାଶକ୍ତି ଦ୍ୱାରା କଠିନରୁ କଠିନ ପରିଶ୍ରମ କଲା ସେ ।

ତାର ଏଭଳି ଅକ୍ଲାନ୍ତ ପରିଶ୍ରମ ଓ ସାତ୍ତ୍ୱିକ ଭାବନାରେ ଭଗବାନ ଖୁସି ହୋଇ ତାକୁ ଓ ତାର ପରିବାରକୁ ସାହାଯ୍ୟ କରିବା ପାଇଁ ଦୁଇଜଣ ଦେବତାଙ୍କୁ ପଠାଇଲେ । ସେ ଦୁହେଁ ନିଜର ଦିବ୍ୟଶକ୍ତି ବଳରେ ଥାଇହାନ୍ ଓ ବାଂଗକୁ ପାହାଡ଼କୁ ଉଠେଇନେଇ ଅନେକ ଦୂରରେ ସ୍ଥାପନ କଲେ ।

ଆଜି ବି ୟୁଙ୍ଗଡ଼ର ଅଦମ୍ୟ ସାହସ, ଅଟଳ ମନୋବଳ ଓ ଦୃଢ଼ ସଂକଳ୍ପକୁ ମନେପକେଇ ଚୀନ୍‌ବାସୀ ଅନେକ ପ୍ରେରଣା ପାଇଥାନ୍ତି । ସେଇଥିପାଇଁ ଚୀନ୍ ଲୋକମାନେ କଠିନରୁ କଠିନ କାମ କରିବା ପାଇଁ କେବେ ପଛେଇ ନ ଥାନ୍ତି ।

ଯୋଗ ଫର୍ ଲାଇଫ୍, ବି.ସି-୭୪, ସେକ୍ଟର-୧, ସଲଟ୍‌ଲେକ୍, କଲିକତା-୭୦୦୬୪

---



ଶିକ୍ଷକ- ବାପୁଙ୍କର ପୂରାନାମ କ'ଣ ଥିଲା ? ସେ କ'ଣ ପାଇଁ ଜେଲ ଯାଇଥିଲେ ?

ଛାତ୍ର- ବାପୁଙ୍କର ପୂରାନାମ ଆଶାରାମ ବାପୁ ଥିଲା, ସେ ବଳାତ୍କାରର ଅପରାଧରେ ଜେଲ ଯାଇଥିଲେ ।

ଯମରାଜ- ଚାଲ, ତୁମ ସମୟ ସମାପ୍ତ ହେଲା ।

ପପୁ- ପ୍ରଭୁ ମୋର ଅନ୍ତିମ ଗୋଟେ ଇଚ୍ଛା ଅଛି, କହିବି !

ଯମରାଜ- କୁହ !

ପପୁ- ପ୍ରଭୁ ଦେଶର ବିକାଶ ଆଉ ଅଚ୍ଛେଦିନକୁ ଥରେ ଦେଖିବାକୁ ଚାହୁଁଛି ।

ଯମରାଜ- ଚାଲାକି ନାହିଁ ! ଅମର ହେବାକୁ ଚାହୁଁଛୁ ନା କ'ଣ ?



# ବରାହ ମିହିରଙ୍କ ଭୂମିକମ୍ପ ଲକ୍ଷଣ ବିଚାର

ଶ୍ରୀ ମୀନକେତନ ସାହୁ

ମନୁଷ୍ୟ ବହୁ ବିପଦର ସମ୍ମୁଖୀନ ହୋଇଥାଏ । ସେସବୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ– ପ୍ରାକୃତିକ ଓ କୃତ୍ରିମ । ପ୍ରାକୃତିକ ବିପତ୍ତିଗୁଡ଼ିକ ମଧ୍ୟରେ ଭୂମିକମ୍ପ ସର୍ବାପେକ୍ଷା ଭୟଙ୍କର ଓ ହାନିକାରକ । ନିକଟ ଅତୀତରେ ଆମ ପଡ଼ୋଶୀ ନେପାଳ ଦେଶରେ ସଂଘଟିତ ଭୂକମ୍ପ କାରଣରୁ ଯେତେ ପ୍ରାଣହାନି ତଥା ସମ୍ପତ୍ତି କ୍ଷୟ ଘଟିଲା, ତାହା ସମସ୍ତଙ୍କ ହୃଦୟକୁ ବିଗଳିତ କରିଦେଲା । ଭୂକମ୍ପଜନିତ କ୍ଷତି କେତେବେଳେ ସାମାନ୍ୟ ହେଲାବେଳେ କେବେ କେବେ ଅପରିମିତ ହୋଇଥାଏ । ୨୭ ଜୁଲାଇରେ ୧୯୭୩ରେ ଚୀନ ଦେଶ ଅନ୍ତର୍ଗତ ତଙ୍ଗଶାନ୍ ପ୍ରଦେଶରେ ଘଟିଥିବା ଭୂମିକମ୍ପରେ ୫ ଲକ୍ଷ ବ୍ୟକ୍ତିଙ୍କର ଜୀବନ ନାଶ ହୋଇଥିଲା । ୧୮ ଅକ୍ଟୋବର ୧୯୮୯ରେ କାଲିଫର୍ଣ୍ଣିଆ ରାଜ୍ୟରେ ସୃଷ୍ଟ ଭୂମିକମ୍ପ ୬ ହଜାର ଲକ୍ଷ ଡଲାର୍ ମୂଲ୍ୟର ସମ୍ପଦ ନଷ୍ଟ କରିଥିଲା । ହିମାଳୟ ପରିସରରେ ନେପାଳ ଅବସ୍ଥିତ । ଭୂତତ୍ତ୍ୱବିତ୍‌ଙ୍କ ମତରେ ଉକ୍ତ ଅଞ୍ଚଳ ଖୁବ୍ ଭୂକମ୍ପପ୍ରବଣଶୀଳ । କାରଣ ସେହି ସ୍ଥାନର ଶିଳା ଦୃଢ଼ ନୁହେଁ, ଶିଥିଳ ।

ଅଧୁନାତନ ବିଜ୍ଞାନ ଜାଣିପାରେ ଭୂମିକମ୍ପ କେତେ ପରିମାଣରେ ଘଟିଲା, କିନ୍ତୁ ଜାଣିପାରେନା ଭୂମିକମ୍ପଟିଏ କେବେ ଘଟିବ । ସମ୍ବନ୍ଧ ବିଦ୍ୟା ଦେଇପାରେନା ତାର ପୂର୍ବସୂଚନା । ଭୂକମ୍ପର ଅବବ୍ୟହିତ ପରେ ଯାଇ ଜଣାପଡ଼େ ତା'ର ପରିସର, ଭୂପୃଷ୍ଠ କେନ୍ଦ୍ର, ତୀବ୍ରତା, ସମୟର ଅବଧି, କ୍ଷୟକ୍ଷତି ଆଦି । ତେଣୁ କୌଣସି ଦେଶ ଭୂକମ୍ପଜନିତ ହାନି ନିବାରଣ ନିମିତ୍ତ ସମର୍ଥ ନୁହେଁ । କିନ୍ତୁ ଆଧୁନିକ ବୈଜ୍ଞାନିକସମୂହ କହନ୍ତି ଯେ ଏ କ୍ଷେତ୍ରରେ ବରାହମିହିର (ଖ୍ରୀ ୫୦୫-୫୮୭)ଙ୍କ ଜ୍ଞାନ ସୁସ୍ପଷ୍ଟ ଥିଲା ।

୧୯୯୦ ଖ୍ରୀଷ୍ଟାବ୍ଦରେ ଚୀନରେ ଜାତ କାଲିଫର୍ଣ୍ଣିଆ ନିବାସୀ ଝୋଙ୍ଗୋଶୌଙ୍କ ମତ ହେଲା ଯେ ଭୂମିକମ୍ପର ମେଘସୃଷ୍ଟି ସହ କିଛି ନିର୍ଦ୍ଦିଷ୍ଟ ସମ୍ବନ୍ଧ ରହିଛି । ଏହି ତତ୍ତ୍ୱକୁ ଭିତ୍ତିକରି ସିଏ ଶତାଧିକ ଭବିଷ୍ୟତ ଭୂମିକମ୍ପର ପ୍ରାକ୍ ସୂଚନା ପ୍ରଦାନ କରିଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଯେ ବରାହ ମିହିର ବିରଚିତ 'ବୃହତ୍ ସଂହିତା' ନାମକ ଗ୍ରନ୍ଥର ଦ୍ୱାତ୍ରିଂଶ ଅଧ୍ୟାୟରେ 'ଭୂକମ୍ପମେଘ'ର ବିବରଣୀ ରହିଛି । ପୁନେ ବିଶ୍ୱବିଦ୍ୟାଳୟର ଏସ୍.ଏନ୍. ଭାବସାର 'ବୃହତ୍ ସଂହିତା'ରେ ପ୍ରଦତ୍ତ ଭୂମିକମ୍ପ ବିଷୟ ପ୍ରତି ବୈଜ୍ଞାନିକମାନଙ୍କ ଦୃଷ୍ଟି ଆକର୍ଷଣ ସକାଶେ ବିଶେଷ ପ୍ରୟାସ କରିଛନ୍ତି । 'ଭୂକମ୍ପ ଲକ୍ଷଣ ବିଚାରଃ' ନାମକ ଅଧ୍ୟାୟରେ ବରାହମିହିର ଭୂମିକମ୍ପ ଓ ଅନ୍ତରୀକ୍ଷର ଗ୍ରହ ପ୍ରଭାଗୁଡ଼ିକର ସମ୍ବନ୍ଧ, ସମୁଦ୍ର ଅନ୍ତର୍ଗତ କ୍ରିୟା ଅସ୍ୱାଭାବିକ

ମେଘରଚନା, ପ୍ରାଣୀମାନଙ୍କର ଅସ୍ୱାଭାବିକ ବ୍ୟବହାର ଆଦିର ବିବରଣୀ ପ୍ରଦାନ କରିଛନ୍ତି ।

ନେସନାଲ କେମିକେଲ୍ ଲେବେରେଟୋରୀ ସଂସ୍ଥାର କେମିକଲ୍ ଇଞ୍ଜିନିୟରିଂ ବିଭାଗର ମୁଖ୍ୟ ହେଉଛନ୍ତି ଶ୍ରୀ ବି.ଡି. କୁଲ୍‌କର୍ଣ୍ଣି । ସେ କହନ୍ତି, ଝୋଙ୍ଗୋଶୌ କାଲିଫର୍ଣ୍ଣିଆସ୍ଥିତ ଭୂକମ୍ପ ଭବିଷ୍ୟକଥନ-କେନ୍ଦ୍ରରୁ ଯାହା କହିଲେ ତାର 'ବୃହତ୍ ସଂହିତା'ରେ ଉଲ୍ଲିଖିତ ଭୂକମ୍ପ ମେଘରଚନାର ସାମ୍ୟ ଓ ବିଲକ୍ଷଣ ବୋଲି ମତେ ଜଣାପଡ଼େ ।'' ସେ କହନ୍ତି, ''ନିରନ୍ତର ଘର୍ଷଣ କାରଣରୁ ଜଳ ଅନ୍ତର୍ଗତ ଶିଳାଗୁଡ଼ିକରେ ଯେତେବେଳେ ଅଧିକ ତାପ ଉତ୍ପନ୍ନ ହୁଏ, ସେତେବେଳେ ଭୂମଧ୍ୟସ୍ଥ ଜଳ ବାଷ୍ପ ପାଲଟିଯାଏ । ପ୍ରୋକ୍ତ ବାଷ୍ପ ବାତାବରଣ ପ୍ରଭାବରେ ଉପରକୁ ଉଠି ଭୂକମ୍ପ ମେଘରୂପ ଧାରଣ କରେ । ଏସବୁ ଜ୍ଞାତ ହେଲେ ଭୂମିକମ୍ପ ଘଟିବାର ସମ୍ଭାବ୍ୟ ସମୟ କଥନ ସମ୍ଭବ ହୁଏ । ଭୂକମ୍ପର ୪୯ ଦିନ ପୂର୍ବରୁ ମେଘଗୁଡ଼ିକ ଗୋଚର ହୁଏ । ଏଣୁ ସେତିକି ଦିନ ଆଗରୁ ହିଁ ଭୂକମ୍ପ ସମ୍ଭାବନା ଜାଣିବା ସମ୍ଭବ ହୋଇଥାଏ ।



'ବୃହତ୍ ସଂହିତା'ରେ କେବେ ମେଘ କାହିଁକି ଜାତ ହେବେ, ସେଗୁଡ଼ିକର ରୂପ କିପରି ଓ କେତେବେଳେ କେତେ ବୃଷ୍ଟି ହେବ, ଭୂଗର୍ଭରେ ଜଳ କେଉଁଠି ଥିବ ଇତ୍ୟାଦି ବିଷୟରେ ଆଲୋଚନା ରହିଛି । ତା ସହ ଭୂକମ୍ପ ଲକ୍ଷଣାଧ୍ୟାୟଃ' ନାମକ ଏକ ଅଧ୍ୟାୟ ମଧ୍ୟ ଅଛି, ଯାହାକି ଭୂକମ୍ପ ବିଷୟ କହେ ।

ଭୂମିକମ୍ପର ବିବିଧ କାରଣ ସମ୍ପର୍କରେ କାଶ୍ୟପ, ଗର୍ଗ, ବଶିଷ୍ଠ, ବୃଦ୍ଧଗର୍ଗ, ପରାଶର ଆଦି ମୁନି ସ୍ୱ ସ୍ୱ ମତ ପ୍ରଦାନ କରିଛନ୍ତି । ପୂର୍ବଜମାନଙ୍କ ଏସବୁ ମତକୁ ଉଲ୍ଲେଖ କରି କୌଣସିଟିକୁ ଖଣ୍ଡନ ଅବା ସମର୍ଥନ କରିନାହାନ୍ତି । ଏଥିରୁ ଏତିକି ଜଣାପଡ଼େ ଯେ ଭୂମିକମ୍ପ ସୃଷ୍ଟିର ବିଭିନ୍ନ କାରଣ ରହିଛି ବୋଲି ତାଙ୍କର ବିଶ୍ୱାସ ।

ବରାହ ମିହିର ଭୂକମ୍ପର ୪ଟି ମଣ୍ଡଳ ନିର୍ଦ୍ଦେଶ କରିଛନ୍ତି । ବାୟବ୍ୟ (ଉତ୍ତର-ପଶ୍ଚିମ), ଆଗ୍ନେୟ (ଦକ୍ଷିଣ-ପୂର୍ବ), ଐନ୍ଦ୍ର (ପୂର୍ବ), ବାରୁଣ (ପଶ୍ଚିମ) । ପ୍ରତିମଣ୍ଡଳ ଅନ୍ତର୍ଗତ ଅଞ୍ଚଳ ଦେଶସମୂହ, ନକ୍ଷତ୍ର, ଏକ ସପ୍ତାହ ପୂର୍ବରୁ ପ୍ରାପ୍ୟମାଣ ସୂଚନାସବୁ, ଭୂକମ୍ପର ଅବଧି ଆଦିର ବିବରଣୀ 'ବୃହତ୍‌ସଂହିତା'ରେ ଉପଲବ୍ଧ । ବରାହ ମିହିରଙ୍କ ଦ୍ୱାରା ସୂଚିତ ଭୂକମ୍ପମଣ୍ଡଳ ସବୁକୁ ମାନଚିତ୍ର ମାଧ୍ୟମରେ ପ୍ରକାଶ କଲେ ଆଧୁନିକ ଯୁଗର ଭୂକମ୍ପ ପ୍ରପୀଡ଼ିତ ରାଜ୍ୟସମୂହର ମାନଚିତ୍ର ସହ ଯଥେଷ୍ଟ ପାର୍ଥକ୍ୟ ପରିଦୃଷ୍ଟ ହୁଏନାହିଁ ।

ଏହା ସର୍ବଜନବିଦିତ ଯେ ବୃହତ୍ ଭୂକମ୍ପ ଭୟଙ୍କର ଭାବେ କ୍ଷତିକାରକ । କିନ୍ତୁ ଏହା କିଞ୍ଚିତ୍ ପରିମାଣରେ ଲାଭଦାୟକ ବୋଲି କହନ୍ତି ବରାହ ମିହିର ।

ବୃହତ୍ ଭୂକମ୍ପ ସଂଘଟିତ ହେବାର ଏକ ସପ୍ତାହ ପୂର୍ବରୁ ଯେଉଁସବୁ ପ୍ରାକ୍‌ସୂଚନା ମିଳିବାର ସମ୍ଭାବନା ରହିଛି, ସେ ସମ୍ପର୍କରେ ମଣ୍ଡଳାନୁଯାୟୀ ସେ ଏପରି କହନ୍ତି । ବାୟବ୍ୟ-ଆକାଶ ଧୂଳିଦ୍ୱାରା ଆବୃତ ହେବ । ଭୂତଳରୁ ଏହାର ଉଦ୍‌ଗମ ଘଟିବ । ପ୍ରବଳ ବାତ ସହ ବିରଳ ସୂର୍ଯ୍ୟକିରଣ ଦୃଷ୍ଟିଗୋଚର ହେବ । ଆଗ୍ନେୟ-ଦିନବେଳା ଦିଗ ରକ୍ତବର୍ଣ୍ଣ ଦିଶିବ, ଜଳସ୍ରୋତ ଲୋପ ପାଇବ ।

# ଜହ୍ନ ଓ କୁନି ଝିଅ

ଶ୍ରୀ ହଳଧର ପଣ୍ଡା





କୁନିଝିଅ କୁନୁମୁନି ସାଙ୍ଗସାଥୀ ମେଳରେ
ଗାଁ ଦାଣ୍ଡେ ଖେଳୁଥିଲା ଦିନେ ସଂଜ ବେଳରେ
ଆସ୍ତେ ଆସ୍ତେ ଆକାଶରେ ତାର ଫୁଲ ଫୁଟିଲା
ପୂରୁବ ଆକଶ ଆଡୁ ଜହ୍ନମାମୁ ଉଠିଲା ।
ତୋଫା ଜହ୍ନ ଜୋଛନାରେ ଝଲସିଲା ସବୁଠି
ତାରା ଆଉ ଦିଶିଲେନି ହଜିଗଲେ କେଉଁଠି ।
କୁନିଝିଅ କୁନୁମୁନି ପଚାରିଲା ମାଆକୁ
ତାରା କିଆଁ ଆକାଶରୁ ହଜିଗଲେ ଛାଆଁକୁ ?
ତୁମେ ପରା କହୁଥିଲ ତାରା ଗୋଟେ ସୂରୁଜ
ଜହ୍ନମାମୁ ଭାରି ସାନ ଥିଲେ ରଙ୍ଗ ମୁରୁଜ ।
ତାରା ଜଳେ ନିଜେ ନିଜେ ଜହ୍ନମାମୁ ଅନ୍ଧାର
ସୂରୁଯର ଆଲୋକରେ ଦିଶେ ଖାଲି ସୁନ୍ଦର ।
ତଥାପି ତାରକାପୁଞ୍ଜ ହଜିଗଲେ କାହିଁକି
ଜହ୍ନମାମୁ ତୋଫା ଦିଶେ ଏତେ ସାନ ହୋଇକି ।
ଟିକି ଝିଅ କଥା ଶୁଣି ମାଆ ହସି କହିଲେ
ତାରା ଜହ୍ନ ଅବସ୍ଥାନ ଜାଣ ତୁହି ପହିଲେ ।
ଆମ ଠାରୁ କୋଟି କୋଟି ଆଲୋକର ବରଷ
ଦୂରେ ରହି ତାରା ଦିଏ ଆଲୁଅର ପରଶ ।
ଜହ୍ନଠାରୁ କୋଟି କୋଟି ଗୁଣ ବଡ଼ ହେଲେ ବି
ବହୁ ଦୂରେ ରହି ଅତି ସାନ ଦିଶୁଥିଲେ ବି ।
ସାନ ଜହ୍ନ ପୃଥିବୀର ନିକଟରେ ଥାଇକି
ଚହଟଇ ସୂର୍ଯ୍ୟାଲୋକେ ସଦା ସେଥିପାଇଁକି ।
ମାଆ କଥା ଶୁଣି ଝିଅ ଭାରି ଖୁସି ହୋଇଲା
ତାରା ଜହ୍ନ ଦୂରତାର ବିବରଣୀ ପାଇଲା ।
ସବୁ ସାଙ୍ଗସାଥୀ ମିଳି ଏହି କଥା ଜାଣିଲେ
ନାଚିକୁଦି ଗାଁ ଦାଣ୍ଡେ ତାରାସବୁ ଗଣିଲେ ।

ସୁଆଁପଦା-୭୫୮୦୨୧

---

ପୂର୍ବ-ପ୍ରବଳ ତଡ଼ିତ୍‌ଯୁକ୍ତ ମହାମେଘ ସୃଷ୍ଟି ହେବ ।
ପଶ୍ଚିମ-ମହାବୃଷ୍ଟି ସୃଷ୍ଟି ହେବ ।

ବରାହ ମିହିରଙ୍କ ଦ୍ୱାରା ସୂଚିତ ଭୂକମ୍ପମଣ୍ଡଳର ମାନଚିତ୍ର ଓ ଆଧୁନିକ ଯୁଗର ବିଶେଷଜ୍ଞଙ୍କ ଦ୍ୱାରା ରଚିତ ଭୂକମ୍ପ ପ୍ରପୀଡ଼ିତ ଅଞ୍ଚଳଗୁଡ଼ିକର ମାନଚିତ୍ରର ତୁଳନାତ୍ମକ ଅଧ୍ୟୟନ କଲେ ଜ୍ଞାତହୁଏ ଯେ ଷଷ୍ଠ ଶତାବ୍ଦୀର ବରାହ ମିହିରଙ୍କ ଏ ସମ୍ବନ୍ଧୀୟ ଜ୍ଞାନ ଉନ୍ନତତର ଥିଲା । ଗୋଟିଏ ଉଦାହରଣ ଦ୍ୱାରା ବିଷୟଟି ସ୍ପଷ୍ଟ ହେବ । ଆଧୁନିକ ଭୂଗୋଳବିତ୍ କହନ୍ତି– ନେପାଳ ପରିସର ସେତେ ଭୂକମ୍ପ-ପ୍ରବଣ ନୁହେଁ । କିନ୍ତୁ ବରାହ ମିହିରଙ୍କ ମତରେ- ଉକ୍ତ ଅଞ୍ଚଳରେ ଭୂକମ୍ପ ସମ୍ଭାବନାର ଆଧିକ୍ୟ ପରିଦୃଷ୍ଟ ହୁଏ । କିଛିକାଳ ପୂର୍ବେ ନେପାଳକୁ ଛିନ୍‌ଛତ୍ର କରିଥିବା ହୃଦୟ-ବିଦାରକ ଭୂମିକମ୍ପ ତାଙ୍କ ମତକୁ ଦୃଢ଼ତା ପ୍ରଦାନ କରେ ।

ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷା ଓ ଗବେଷଣା କେନ୍ଦ୍ର, ବୁର୍ଲା
ପୋଷ୍ଟ ଅଫିସ୍ ପାଖ, ବୁର୍ଲା, ସମ୍ବଲପୁର-୭୬୮୦୧୭

# ରିତୁର କାଗଜ ଡଙ୍ଗା

ଶ୍ରୀ ମନୋହର

ରିତୁ ବାପାମାଆଙ୍କର ଗୋଟିଏ ବୋଲି ଝିଅ । ଭାରି ଗେହ୍ଲି । ଅଝଟ ହେବା, ଜିଦ୍ କରିବା ତା'ର ନିତିଦିନିଆ କଥା । ଦ୍ୱିତୀୟ ଶ୍ରେଣୀ ବାର୍ଷିକ ପରୀକ୍ଷା ସରୁ ସରୁ ତା' ମା' ସୁରେଖାଦେବୀ କହିଲେ, "ରିତୁ ପାଇଁ କେଉଁଠୁ ତୃତୀୟ ଶ୍ରେଣୀ ବହି ଯୋଗାଡ଼ କରିଦିଅ । ଆଗକୁ ଛୁଟି ଅଛି । ପଢ଼ାପଢ଼ି କରିବ, ନହେଲେ ଏ ଚଣ୍ଡିକୁ ଅଟକେଇ ରଖିବ କିଏ ?"

–ଆଜିକାଲି ପିଲାଙ୍କର ପଢ଼ାବହି କ'ଣ ଏତେ ସହଜରେ ମିଳେ ! ବହୁତ ଖୋଜାଖୋଜି କରି ସାହିତ୍ୟ ବହିଟେ ଯୋଗାଡ଼ କରିଛି । ଏଇଟା ପଢୁଥାଉ । ଆଉ ସବୁ ପରେ ଦେଖିବା ।" ରିତୁର ବାପା ଗୋଲୋକବାବୁ କହିଲେ ।

ସାହିତ୍ୟ ବହିର ନାଁଟା ଶୁଣି ଖୁସିରେ ଡେଇଁ ପଡ଼ିଲା ରିତୁ । ବାପାଙ୍କ ହାତରୁ ବହିଟେ ଝାମ୍ପି ନେଇ ବସିଗଲା ସୋଫା ଉପରେ । ଚକଚକିଆ ରଂଗିନ ଛବି ଥିବା ବହିଟିର ପୃଷ୍ଠା ପରେ ପୃଷ୍ଠା ଓଲଟେଇ ଚାଲିଲା । ଦେଖୁ ଦେଖୁ 'ଭାସି ଯା' ମୋର କାଗଜ ଡଙ୍ଗା' ବିଷୟଟିରେ ତା' ଆଖି ଅଟକିଗଲା । ତା' ଉପର ଶ୍ରେଣୀର ପିଲାଙ୍କଠାରୁ ଶୁଣି ସେ ଗୀତର ସ୍ୱର ମନେରଖିଥିଲା । ସେ ଗୀତଟିକୁ ବଡ଼ ପାଟିରେ ଗାଇଗଲା । ତା'ର ଇଚ୍ଛା ହେଲା କାଗଜ ଡଙ୍ଗାଟିଏ ପାଣିରେ ଭସାଇ ସେ ଗୀତଟି ଗାଆନ୍ତା; ହେଲେ ସେତେବେଳେ ତ ଏପ୍ରିଲ ମାସ ଖରାଦିନ । ବାହାରେ ପାଣି କେଉଁଠୁ ପାଇବ ଯେ ସେ ଡଙ୍ଗା ଭସାଇବ ? ମନକୁ ମାରି କିଛି ଦିନ ଚୁପ୍ ରହିଗଲା ।

ମଇ ମାସର ଅଧା ବେଳକୁ ପଶ୍ଚିମ ଆକାଶରେ ଖଣ୍ଡେ କଳାହାଣ୍ଡିଆ ମେଘ ଉଠାଇଲା । ରିତୁର ଖୁସି କହିଲେ ନ ସରେ । ଆଜି ବର୍ଷା ଛାଡ଼ୁ ଛାଡ଼ୁ ସେ ଡଙ୍ଗା ଭସାଇବ । ହେଲେ କ'ଣ ହେବ, ପଶ୍ଚିମ ଦିଗରୁ ଖାଲି ସୁ ସୁ କରି ପବନ ବହିଲା । ଟୋପେ ଟାପେ ପାଣି ପଡ଼ିଲା ଯେ ମାଟି ଭିଜିଲା ନାହିଁ ।

ରିତୁ ପୁଣି ଅପେକ୍ଷା କଲା ବର୍ଷାକୁ । ଦିନେ ନା ଦିନେ ତ ବର୍ଷା ଆସିବ ! ବାପାଙ୍କର ପୁରୁଣା ଖବର କାଗଜ ଓ ନିଜର ପୁରୁଣା ବହିରୁ କାଗଜ ଚିରି ଡଙ୍ଗା ତିଆରିକଲା । ଛୋଟ ଡଙ୍ଗା, ବଡ଼ ଡଙ୍ଗା, ମୋଟା, ଚେପେଟା– କେତେ ରକମ ରକମ ଡଙ୍ଗା । ଘର ସାରା ଚିରା କାଗଜ ଦେଖି ରିତୁର ମାଆ ବିଗିଡ଼ିଗଲେ । କହିଲେ, "କାହିଁକି ଘରସାରା ଅଳିଆ କରୁଛୁ ? ବର୍ଷା ଦିନ କ'ଣ ହେଲାଣି ଯେ ତୁ ଡଙ୍ଗା ଭସେଇବୁ ? ଦିନ ସାରା ଘର ଓଳେଇ ମୋ ଅଣ୍ଟା ପିଠି ଦରଜ ହୋଇଗଲାଣି । ସେ କାଗଜ ସବୁ ଫିଙ୍ଗିବୁ ନା ଦେଖିବୁ ଏଇନେ ?"

ଗୋଲୋକବାବୁ ଘର ଭିତରକୁ ପଶି ଆସୁ ଆସୁ କହିଲେ, "କାହିଁକି ଛୁଆଟା ଉପରେ ସବୁବେଳେ ଚିଡ଼ିଚିଡ଼ି ହେଉଛ ? ସେ ଖେଳୁଛି ତ ଖେଳୁ । ଛୁଟି ତ ଅଛି । କାଗଜରେ ରକେଟ୍, ଡଙ୍ଗା, ଫୁଲ, ଚକ୍ରି ତିଆରି କରୁ । ଏଥିରେ ତା'ର ମାନସିକ ବିକାଶ ଘଟିବ । ସୃଜନ ଶକ୍ତି ବୃଦ୍ଧି ପାଇବ ।"

"ତୁମ ବାପଝିଅଙ୍କୁ କିଏ ପାରିଲାଣି ନା ପାରିବ ?" ସୁରେଖାଦେବୀ ବିଡ଼ିବିଡ଼ି ହୋଇ ରୋଷେଇ ଘର ଭିତରାକୁ ପଶିଗଲେ ।

ଖରାଦିନ ସରି ବର୍ଷାଦିନ ଆସିଲା; ହେଲେ ଆଜିକାଲି ତ ଆଉ ଆଗ ପରି ବର୍ଷା ହେଉନାହିଁ । ବିଭିନ୍ନ ଦିଗରୁ ପରିବେଶ ନଷ୍ଟ ହୋଇ ବର୍ଷା କମିଯାଇଛି କିମ୍ବା ଅଦିନିଆ ବର୍ଷା ହେଉଛି । କେତେଦିନ ଧରି ଏମିତି ବର୍ଷା ଆସୁଥାଏ, ଯାଉଥାଏ । ରିତୁର ବ୍ୟସ୍ତତା ବଢ଼ି ବଢ଼ି ଚାଲିଥାଏ । ଆକାଶରେ ମେଘ ଦେଖିଲେ ତା'ର କାଗଜ ଚିରା ଆରମ୍ଭ ହୁଏ । ଡଙ୍ଗା ତିଆରି ଚାଲେ । ଘର ସାରା ଅଳିଆ ହୁଏ । ମା' ବିରକ୍ତ ହୁଅନ୍ତି । ଏମିତି ଚାଲିଲା କେତେ ଦିନ ।

ଦିନେ ରାତିରେ ରିତୁ ଖାଇପିଇ ଶୋଇ ପଡ଼ିଲା । ରାତି ସାରା ଜୋର୍‌ରେ ଛେଚିଦେଲା ବର୍ଷା । ବିଲ, ଗାଡ଼ିଆ ପୋଖରୀ ସବୁଆଡ଼େ ପାଣି ଭର୍ତ୍ତି ହୋଇଗଲା । ସକାଳ ହେଲା । ରିତୁର ନିଦ ଭାଙ୍ଗିଗଲା । ବାହାରେ କେଁ କାଁ ବେଙ୍ଗ ରଡ଼ିରେ କାନ ଫାଟି ପଡୁଥାଏ । ନଈ, ନାଳ, ବିଲରୁ ପାଣି ବୋହି ଘୋ ଘୋ ଶବ୍ଦ ହେଉଥାଏ । ଆଖି ମଳ ମଳି ବାହାରକୁ ବାହାରିଲା ରିତୁ । ଦେଖିଲା ଚାରିଆଡ଼େ ପାଣି ଭର୍ତ୍ତି । ତା'ଖୁସିର ସୀମା ରହିଲା ନାହିଁ ।

ରିତୁକୁ ଖୁସି କରିବା ପାଇଁ ଗୋଲୋକବାବୁ ଆଗରୁ ଉଠି ଦି'ଟା ବଡ଼ କାଗଜ ଡଙ୍ଗା ତିଆରି କରି ରଖିଥିଲେ । ତା' ମାଆ ରୋଷେଇଘରୁ କୁହାଟ ଛାଡୁଥିଲେ, "ଆଗ ଦାନ୍ତ ଘସି ଜଳଖିଆ ଖାଇପକା । ତା'ପରେ ଯାହା କରିବୁ ।"

ରିତୁ କି ଆଉ କାହା କଥା ଶୁଣେ । କାଗଜ ଡଙ୍ଗାଟିଏ ଧରି ଧାଇଁଲା ଘର ସାମନା ନାଳକୁ । ତାକୁ ପାଣିରେ ଭସାଇଦେଇ ତା' କୁନି ହାତରେ ପାଣି ବାହିଦେଲା । ଗାଇଲା– ଭାସି ଯା' ମୋର କାଗଜ ଡଙ୍ଗା ଭାସି ଯା......

ରିତୁର କାଗଜ ଡଙ୍ଗା ଭାସି ଭାସି ଦୂରକୁ ଯାଉଥାଏ । ଥିରି ଥିରି ପବନରେ ଏପଟସେପଟ ମଙ୍ଗ ବୁଲଉଥାଏ । କୁନି କୁନି ତରଙ୍ଗରେ ନାଚି ଉଠୁଥାଏ । ରିତୁ ଖୁସିରେ ତାଳି ମାରୁଥାଏ । କିଛି ସମୟ ପରେ ରିତୁ ଦେଖିଲା ମସ୍ତବଡ଼ ବେଙ୍ଗଟାଏ ଚାରିକାତ ହଲାଇ ତା' କାଗଜ ଡଙ୍ଗା ଆଡକୁ ମାଡ଼ି ଆସୁଛି । ରିତୁ ଛାନିଆ ହୋଇ ପଡ଼ିଲା । ହାତ ହଲାଇ ହାସ୍ ହାସ୍ କରି ତାକୁ ଘଉଡ଼ାଇଲା ।



ବେଙ୍ଗ କି ଆଉ ତା' କଥା ଶୁଣେ ? କ'ଣ ଗୋଟିଏ ଖାଦ୍ୟ ଭାସୁଛି ଭାବି କାଗଜ ଡଙ୍ଗାଟିକୁ ତା' ଥୋଡ଼ିରେ ଖୁମ୍ପ ମାରିଲା । କାଗଜ ଡଙ୍ଗା ଟଳମଳ ହେଲା । ରିତୁ କ'ଣ କରିବ କିଛି ଭାବିପାରିଲା ନାହିଁ । ତା'ଉପରକୁ ଗୋଡ଼ିଟିଏ ପକାଇଲା; ତଥାପି ବେଙ୍ଗ

ଫୋପାଡ଼ିଲା । ପଥରଟି ବେଙ୍ଗ ଉପରେ ନ ବାଜି କାଗଜ ଡଙ୍ଗା ଉପରେ ଦୁଲ୍ କରି ପଡ଼ିଲା । ଡଙ୍ଗାଟି ଟବ୍ କରି ବୁଡ଼ିଗଲା । ରିତୁ ଭେଁ ଭେଁ କରି କାନ୍ଦି ପକାଇଲା । ତା'ର କାନ୍ଦ ଶୁଣି ଧାଇଁଆସିଲେ ବାପା ।

କହିଲେ, "ଓ ଏଇ କଥା ।" ଘର ଭିତରୁ ଆଉ ଗୋଟିଏ ଚକଚକିଆ ଡଙ୍ଗା ଆଣି ତା' ହାତରେ

ଶୁଣିଲା ନାହିଁ । ରିତୁ ରାଗିଯାଇ ବଡ଼ ପଥରଟିଏ ଉଠାଇଲା । ବେଙ୍ଗ ଉପରକୁ ଲକ୍ଷ୍ୟ କରି ଜୋର୍‌ରେ

ଧରାଇଦେଲେ । ରିତୁ ମୁହଁରେ ଫୁଲ ଫୁଟିଉଠିଲା ।

ସ.ଶି.ବି.ମ, ବାଣୀତୀର୍ଥ, କରଞ୍ଜିଆ, ମୟୂରଭଞ୍ଜ-୩୭ ।

---

# ଯେ ପାଞ୍ଚେ ପରମନ୍ଦ

### ଶ୍ରୀ ଗିରିଧାରୀ ସ୍ୱାଇଁ

ଅହିଂସା ,ଦୟା, କ୍ଷମା, ସହନଶୀଳତା ଇତ୍ୟାଦି ସୁଗୁଣ ମଣିଷକୁ ଦେବତା ଆସନର ଅଧିକାରୀ କରେ । ରାଗ, ଈର୍ଷା, ହିଂସା, ଦ୍ୱେଷ, ଅହଙ୍କାର ଆଦି ଦୁର୍ଗୁଣ ମଣିଷକୁ ବିନାଶ କରେ । କଥାରେ ଅଛି- ଭଲକାମ କଲେ ଭଲଫଳ, ମନ୍ଦ କାମକଲେ ମନ୍ଦଫଳ । ପୁଣି କୁହାଯାଇଛି- ଯେ ପାଞ୍ଚେ ପରମନ୍ଦ, ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ । ଏଣୁ କାହାର ଉପକାର କରି ନ ପାରିଲେ ଅପକାର କରିବା ଉଚିତ୍ ନୁହେଁ । ଏହାର କୁଫଳ ମଣିଷକୁ ଅମଣିଷ କରିଦିଏ । ରାଗ, ଈର୍ଷା କିପରି ବିନାଶ କରେ ତାର ଏକ ନିଚ୍ଛକ କାହାଣୀ ଏଥିରେ ଦିଆଯାଇଛି ।

ଗ୍ରୀସ୍ ଦେଶର କଥା । କ୍ରୀଡ଼ା ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରି ଦେଶର ଗୌରବ ବଢ଼ାଇଥିବା ଜଣେ କ୍ରୀଡ଼ାବିତ୍‌ଙ୍କର ସୁଦୃଶ୍ୟ ମାର୍ବଲ ମୂର୍ତ୍ତିଟିଏ କର୍ତ୍ତୃପକ୍ଷଙ୍କ ଉଦ୍ୟମରେ ସହର ଉପକଣ୍ଠରେ ସ୍ଥାପନ କରାଗଲା । ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ହାସଲ କରିଥିବା ଖେଳାଳିଟି ଏହା ସହିପାରିଲା ନାହିଁ । ତା' ଉପରେ ଭୀଷଣ ରାଗିଲା । ସେ ପ୍ରତିମୂର୍ତ୍ତି ନିର୍ମାଣକୁ ବିରୋଧ କଲା । ତା' କଥା କେହି କର୍ଣ୍ଣପାତ କଲେନାହିଁ । ଦିନେ ନିଃଶବ୍ଦ ରାତିରେ ମୂର୍ତ୍ତିଟିକୁ ଭାଙ୍ଗିବାକୁ ମନସ୍ଥ କରି ନିହାଣ ହାତୁଡ଼ି ନେଇ ଚାଲିଲା । ବିରାଟକାୟ ସେହି ମାର୍ବଲ ମୂର୍ତ୍ତିଟିକୁ ଭାଙ୍ଗିବାକୁ ଆପ୍ରାଣ ଚେଷ୍ଟାକଲା । ତା' ପରଦିନ ସକାଳୁ ଦେଖାଗଲା ନବନିର୍ମିତ ସେହି ବିରାଟ ମାର୍ବଲ ମୂର୍ତ୍ତିଟି ଭାଙ୍ଗିପଡ଼ିଛି । ସେହି ମୂର୍ତ୍ତିତଳେ ଚାପିହୋଇ କେହି ଜଣେ ଲୋକ ମରିପଡ଼ିଛି । ତା ହାତରେ ହାତୁଡ଼ି ଓ ନିହାଣ ରହିଛି । ମାର୍ବଲ ମୂର୍ତ୍ତିଟି ସମ୍ପୂର୍ଣ୍ଣ ତା' ଉପରେ ପଡ଼ିଯାଇଛି । ଏହି ଘଟଣା ପ୍ରଘଟ ହୋଇଗଲା । ହିଂସା, ଈର୍ଷା ଓ ପରଶ୍ରୀକାତରତା କିପରି ମଣିଷକୁ ବିନାଶ କରେ, ଏକଥା ତାହାର ଜ୍ୱଳନ୍ତ ଉଦାହରଣ । ଆମେ ଲୁଚିଛପି



# ହଜାରୀ ଓ ଜନ୍

ଶ୍ରୀ ହରୀଶ ଚନ୍ଦ୍ର ପୃଷ୍ଟି

ବାଲ୍ୟକାଳରୁ ପିଲାଟି ଆମ୍ବପ୍ରିୟ । ସୁଯୋଗ ଉଣ୍ଡି ପ୍ରତିଦିନ ସେ କାହାର ନା କାହାର ବାଡ଼ିବଗିଚାରେ ପଶି ଆମ୍ବ ଚୋରିକରେ । ଚୋରିକରି ସୁଆଦିଆ ଆମ୍ବର ରସ ଶୋଷି ଶୋଷି ଖାଇବାକୁ ସେ ଖୁବ୍ ଭଲପାଏ । ସମୟକ୍ରମେ ପିଲାଟି ବଡ଼ ହେଲା । ଥରେ ସେ ପିଲାଟି ଚିନ୍ତାକଲା- ''ଯଦି ଆମ୍ବ ଖାଇବାରେ ଏତେ ମଜା, ତେବେ ଗୁଡ଼ାଏ ଆମ୍ବ ଗଛ ଲଗାଇଦେଲେ କେତେ ଭଲ ହୁଅନ୍ତା ! ଲୋକମାନଙ୍କର କେତେ ମଙ୍ଗଳ ନ ହୁଅନ୍ତା ସତେ !'' ଏହା ଭାବି ସେ ବୁଲି ବୁଲି ଆମ୍ବ ଟାକୁଆ ସଂଗ୍ରହ କରିବାରେ ଲାଗିପଡ଼ିଲା । ଅଳ୍ପଦିନ ମଧ୍ୟରେ ତା ପାଖରେ ଗୁଡ଼ାଏ ଆମ୍ବ ଟାକୁଆ ଜମା ହୋଇଗଲା । ଏହାପରେ ଟାକୁଆରୁ ଆମ୍ବ ଚାରା କରି ବିଭିନ୍ନ ସ୍ଥାନରେ ସେସବୁ ଲଗାଇବାରେ ସେ ମନପ୍ରାଣ ଢାଳିଦେଲା । ଦିନରାତି ତା' କାମ ହେଲା- ଆମ୍ବଚାରା ବାଣ୍ଟିବା । ଆମ୍ବଗଛ ଲଗାଇବାର ଶ୍ରେୟ ତାକୁ ମିଳିଲା । ହଜାରେ ଗାଁରେ ଆମ୍ବ ଗଛ ଲଗାଇ ଥିବାରୁ ଲୋକେ ଆଦରରେ ତାକୁ 'ହଜାରୀ' 'ହଜାରୀ' ଡାକିଲେ । ଖାଲି ତା ଗାଁ ନୁହେଁ, ତା ଜିଲ୍ଲାର ନାଁ ମଧ୍ୟ ଲୋକେ ଶ୍ରଦ୍ଧାରେ ରଖିଲେ 'ହଜାରିବାଗ୍' । ଏଇ 'ହଜାରିବାଗ' ଜିଲ୍ଲାଟି ବର୍ତ୍ତମାନ ଆମ ଦେଶର 'ଝାଡ଼ଖଣ୍ଡ' ରାଜ୍ୟରେ ଅବସ୍ଥିତ ।

ଆଉ ଜଣେ ପ୍ରସିଦ୍ଧ ସମାଜସେବୀ । ଘର ତାଙ୍କର ଆମେରିକା । ସେ ଯେଉଁଆଡ଼େ ଯାଉଥିଲେ, ପାଖରେ ରଖିଥିବା ସେଓ ମଞ୍ଜି ବାହାର କରି ସେଥିରୁ କିଛି ସେଠାରେ ପୋତୁଥିଲେ । ତାଙ୍କର ଏପରି କାମ ପାଇଁ ସେ ଲୋକମୁଖରେ ସେଓ ମଞ୍ଜି ଜନ୍ (ଜନ୍ ଦ ଆପଲ୍ ସିଡ୍) ନାମରେ ପରିଚିତ ଥିଲେ । ଲୋକେ କୌତୂହଳୀ ହୋଇ ତାଙ୍କୁ ପଚାରୁଥିଲେ, ''ମହାଶୟ, ଆପଣ ଏଭଳି କରିବାର କାରଣ କ'ଣ ? ଗଛ ଉଠିବ, ବଡ଼ ହେବ, ସେଥିରେ ଫଳ ଫଳିବ, ସେ ପର୍ଯ୍ୟନ୍ତ ଆପଣ ବଞ୍ଚିବେ କି ନାହିଁ ସନ୍ଦେହ । ପୁଣି ଯଦିବା ବଞ୍ଚିବେ ଯେତିକି ମଞ୍ଜି ପୋତୁଛନ୍ତି, ସେସବୁ ଗଛର ଫଳ ତ ଆପଣ କେବେହେଲେ ଖାଇପାରିବେ ନାହିଁ । ଅଯଥା ଏତେ ପରିଶ୍ରମ କରୁଛନ୍ତି କାହିଁକି ?'' ଜନ୍‌ଙ୍କ ଉତ୍ତର ଥିଲା- ମୁଁ ନଥିଲେ କ'ଣ ହେଲା ? ମୋ ପିଲାଛୁଆ ତ ଖାଇବେ,



JOHNNY APPLESEED.

---

କରୁଥିବା ଖରାପ କାମକୁ କେହିଜଣେ ସଦାସର୍ବଦା ଦେଖୁଥାଏ । ତେଣୁ ଯଥାର୍ଥରେ କୁହାଯାଇଛି- ଯେ ପାଞ୍ଚେ ପରମନ୍ଦ, ତା ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ।

କବି କୁଟୀର, କୁଆଁସରପୁର, ଦେବୀଦ୍ୱାର, ଯାଜପୁର

# ଗୋଲ୍‌ଡିଲକ୍ସ ଅଂଚଳ

ଶ୍ରୀ କମଳାକାନ୍ତ ଜେନା

ଜଳ ଆମର ଜୀବନ । ଅର୍ଥାତ୍, ପାଣି ନ ଥିଲେ ଆମେ ବଂଚିପାରିବା ନାହିଁ । ଆଜିକୁ ୪୫୦ କୋଟି ବର୍ଷ ତଳେ ପୃଥିବୀ ସୃଷ୍ଟି ହେଲା । ସେତେବେଳେ ପୃଥିବୀରେ କୌଣସି ଜୀବ ନଥିଲେ । ପ୍ରାୟ ୧୦୦ କୋଟି ବର୍ଷ ବିତିଗଲା । ତାପରେ ପୃଥିବୀରେ ଜୀବନ ସୃଷ୍ଟି ହେଲା । ଆଜିକୁ ପ୍ରାୟ ୩୫୦ କୋଟି ବର୍ଷ ତଳେ ପୃଥିବୀପୃଷ୍ଠରେ ଥିବା ସମୁଦ୍ର ଭିତରେ ହିଁ ପ୍ରଥମ ଜୀବ ସୃଷ୍ଟି ହୋଇଥିଲା । ତେଣୁ ଜୀବନ ସହିତ ଜଳର ସଂପର୍କ କହିଲେ ସରିବ ନାହିଁ ।

ଆମେ ପାଣିକୁ ତିନିଟା ରୂପରେ ଦେଖୁ । ପ୍ରଥମ ରୂପ ହେଉଛି ଆମେ ପିଉଥିବା ପାଣି, ଯାହାକି ତରଳ ଅବସ୍ଥାରେ ଅଛି । ଯଦି ସେହି ପାଣିକୁ ଆମେ ଫ୍ରିଜ୍ ଭିତରେ ରଖିଦେବା, କିଛି ସମୟ ପରେ ତାହା ବରଫରେ ପରିଣତ ହେଇଯିବ । ବରଫ ହେଉଛି ପାଣିର କଠିନ ଅବସ୍ଥା । ସେହିପରି ଭାତ ଫୁଟିବା ସମୟରେ ଆମେ ବାମ୍ଫ ଉଠୁଥିବାର ଦେଖୁ । କରେଇରେ ପାଣିକୁ ଗରମ କଲେ ତାହା ବାଷ୍ପ ରୂପରେ ଉପରକୁ ଉଠିଯାଏ ଓ କିଛି ସମୟ ପରେ କରେଇରୁ ସବୁ ପାଣି ଉଭାନ୍ ହେଇଯାଏ । ଅର୍ଥାତ୍ ପାଣିକୁ ବେଶି ଗରମ କଲେ ତାହା ବାଷ୍ପର ରୂପ ଧାରଣ କରେ । ତେଣୁ ପାଣି ତିନିଟା ରୂପରେ ରହିପାରେ । ସବୁଠାରୁ ବଡକଥା, ଆମେ ପୃଥିବୀରେ ସବୁଦିନ ବଂଚିରହିବା ପାଇଁ ପାଣି ତିନିଟାଯାକ ରୂପରେ ରହିପାରୁଥିବା ଦରକାର; ନହେଲେ ଆମେ ପୃଥିବୀରେ ରହିବା ସମ୍ଭବ ନୁହେଁ ।

ଆମେ ଯେଉଁ ପୃଥିବୀ ଉପରେ ବାସକରୁ, ତାହା ଗୋଟିଏ ଗ୍ରହ । ସେ ସୂର୍ଯ୍ୟ ଚାରିପଟେ ବୁଲୁଛି । ପୃଥିବୀଗ୍ରହ ଭଳି ଆହୁରି ୭ଟି ଗ୍ରହ ଓ ଅନେକ ଛୋଟବଡ ପିଣ୍ଡ ସୂର୍ଯ୍ୟ ଚାରିପଟେ ବିଭିନ୍ନ ଦୂରତାରେ ବୁଲୁଛନ୍ତି । ଯେଉଁ ପିଣ୍ଡଗୁଡିକ ସୂର୍ଯ୍ୟର ଅତି ନିକଟରେ ରହି ବୁଲୁଛନ୍ତି, ସେଗୁଡିକ ଅତି ଉତ୍ତପ୍ତ ଅବସ୍ଥାରେ ଅଛନ୍ତି । ସେଠାରେ ନିଆଁ ବର୍ଷିଲା ପରି ଖରା ହୁଏ । ବୁଧ ଓ ଶୁକ୍ର ସେମିତିକା ଦୁଇଟା ଗ୍ରହ । ସେଠାରେ ଆମେ ବଂଚିବା କଷ୍ଟକର । ଯେଉଁ ପିଣ୍ଡଗୁଡିକ ସୂର୍ଯ୍ୟଠାରୁ ଅତି ଦୂରରେ ରହି ବୁଲୁଛନ୍ତି, ସେଗୁଡିକ ଅତି ଶୀତଳ ଅବସ୍ଥାରେ ଅଛନ୍ତି । ସେଠାରେ ଅତି ଶୀତ ହୁଏ । ପାଣି ସବୁବେଳେ ବରଫ ଅବସ୍ଥାରେ ରହେ । ସେଭଳି ଗ୍ରହ ବା ଉପଗ୍ରହରେ ଆମେ ବଂଚିପାରିବା ନାହିଁ । ଆମ ବଂଚିବା ପାଇଁ ଆମର ପୃଥିବୀଗ୍ରହ ଠିକ୍ ଜାଗାରେ ରହିଛି । ସୂର୍ଯ୍ୟଠାରୁ ଯେଉଁ ଦୂରତାରେ ରହିଛି, ସେହି ଅଂଚଳକୁ ଗୋଲଡିଲକ୍‌ସ୍ ଅଂଚଳ (Goldilocks Region) ବୋଲି କୁହାଯାଏ ।

---

ତାଙ୍କ ପିଲା ଛୁଆ ବି ଖାଇବେ, ସାହି-ପଡ଼ିଶାର ଲୋକ ଖାଇବେ; ଏଭଳି ସାରା ଆମେରିକା ବାସୀ ଖାଇ-ପାରିବେ । ଯଦି ବଳିପଡ଼େ, ଅନ୍ୟ ଦେଶବାସୀ ବି ଖାଇବେ ।'' କେତେ ମହତ୍ ଭାବନା, ଥରେ ଭାବିଲେ ! ଜନ୍ ଖାଲି ନିଜ ପାଇଁ ଭାବୁ ନଥିଲେ, ଭବିଷ୍ୟତ ପାଇଁ ଭାବୁଥିଲେ । ମାନବ ଜାତି ପାଇଁ ଭାବୁଥିଲେ ।

ହଜାରୀ ଓ ଜନ୍‌ଙ୍କ ଭଳି ଭାବନା ସମସ୍ତଙ୍କ ଭିତରେ ଆସିଲେ ଏ ଦୁନିଆଁର କେତେ ମଙ୍ଗଳ ହୁଅନ୍ତା ସତେ !

ସାଇ ହାରମୋନୀ, ଘ.ନଂ-୧୪, ଚନ୍ଦକା,
ଭୁବନେଶ୍ୱର, ଜି-ଖୋର୍ଦ୍ଧା-୭୫୪୦୦୫

ଏହା ସୂର୍ଯ୍ୟଠାରୁ ଏମିତି ଦୂରତାରେ ରହିଛି, ଯେଉଁଠି ବେଶି ଗରମ ନାହିଁ, କିମ୍ବା ବେଶି ଥଣ୍ଡା ନାହିଁ । ଏହି ଅଂଚଳରେ ପାଣି କଠିନ-ତରଳ-ଗ୍ୟାସୀୟ ତିନିଟା ଅବସ୍ଥାରେ ରହିପାରିବ । ତେଣୁ ଆମେ ମଧ୍ୟ ବଂଚିପାରିବା ।

ଏବେ ତ ମହାକାଶ ଗବେଷଣାର ଯୁଗ । ଆଜିକାଲି ପୃଥିବୀର ବୈଜ୍ଞାନିକମାନେ ଆମ ସୌରଜଗତ ବାହାରେ ଗ୍ରହର ସନ୍ଧାନ କରୁଛନ୍ତି । ପୃଥିବୀକୁ ମିଶେଇ ଆଠଟା ଗ୍ରହ, ଚନ୍ଦ୍ରକୁ ମିଶେଇ ଶହ ଶହ ଉପଗ୍ରହ, ଗ୍ରହାଣୁପୁଞ୍ଜ ଏବଂ ଅଗଣିତ ଅନ୍ୟାନ୍ୟ ପିଣ୍ଡକୁ ନେଇ ଆମର ସୌରଜଗତ ତିଆରି ହୋଇଛି । ସୌରଜଗତର ସମସ୍ତପିଣ୍ଡ ସୂର୍ଯ୍ୟ ଚାରିପଟେ ବୁଲୁଛନ୍ତି । ଆମ ସୌରଜଗତ ବାହାରେ ଆମର ସୂର୍ଯ୍ୟ ପରି କୋଟି କୋଟି ସୂର୍ଯ୍ୟ ରହିଛନ୍ତି । ସେମାନଙ୍କୁ ନକ୍ଷତ୍ର ବୋଲି କୁହାଯାଏ । ସବୁ ନକ୍ଷତ୍ରର ସୌରଜଗତ ନାହିଁ; କିନ୍ତୁ ଅନେକ ନକ୍ଷତ୍ରର ସୌରଜଗତ ଅଛି । ସେସବୁ ସୌରଜଗତରେ ଥିବା ଗ୍ରହଗୁଡିକ ନିଜ ନିଜର ନକ୍ଷତ୍ର ଚାରିପଟେ ବୁଲୁଛନ୍ତି । ସେଗୁଡିକ ଆମ ସୌରଜଗତର ବାହାରେ ବହୁଦୂରରେ ରହିଥିବା ଗ୍ରହ । ସେଭଳି ଗ୍ରହର ସନ୍ଧାନ ଜାରି ରହିଛି । ଅବଶ୍ୟ ସୌରଜଗତର ବାହାରେ ବହୁ ଦୂରରେ ରହିଥିବା ଗ୍ରହଗୁଡିକୁ କେବଳ ଚିହ୍ନଟ କରିବା ଆମର ଉଦ୍ଦେଶ୍ୟ ନୁହେଁ । ଅସଲ ଲକ୍ଷ୍ୟ ହେଉଛି ପୃଥିବୀ ଭଳି ଜୀବଜଗତ ରହିଥିବା ଗ୍ରହର ସନ୍ଧାନ କରିବା ଏବଂ ସେସବୁ ଜୀବ-ଜଗତ ସହିତ ସଂପର୍କ ସ୍ଥାପନ କରିବା । ଏଥିପାଇଁ ଆମକୁ ଗୋଲଡିଲକ୍ସ୍ ଅଂଚଳର ଧାରଣା ସାହାଯ୍ୟ କରୁଛି ।

ଯେତେବେଳେ କୌଣସି ନକ୍ଷତ୍ରର ଗ୍ରହ ଉପଗ୍ରହ ଅଛନ୍ତି ବୋଲି ଆମକୁ ସୂଚନା ମିଳୁଛି, ନିଜର ନକ୍ଷତ୍ରଠାରୁ ସେହି ଗ୍ରହଟି କେତେ ଦୂରରେ ଅଛି, ସେକଥା ପ୍ରଥମେ ଆମେ ଚିନ୍ତାକରୁଛୁ । କାରଣ, ପୃଥିବୀ ବାହାରେ ଜୀବଜଗତ ଖୋଜିବା ଆମର ଅସଲ ଲକ୍ଷ୍ୟ । ଆମେ ଜାଣୁ, ସୌରଜଗତ ରହିଥିବା ନକ୍ଷତ୍ରର ଗୋଲଡିଲକ୍ସ୍ ଅଂଚଳରେ ରହୁଥିବା ଗ୍ରହରେ ଜୀବଜଗତ ରହିପାରିବ । ତେଣୁ ସେଭଳି ଗ୍ରହକୁ ଖୋଜା ଚାଲିଛି । କିନ୍ତୁ ଦୁଃଖର କଥା, ଆମକୁ ଅନେକ ଗ୍ରହ ମିଳିଥିଲେ ବି କୌଣସି ଗ୍ରହରେ ଜୀବଜଗତ ଥିବାର ଠୋସ୍ ପ୍ରମାଣ ମିଳି ନାହିଁ । ହେଲେ ବାହାର ଗ୍ରହରେ ଜୀବଜଗତ ନାହିଁ ବୋଲି ଆମେ କହିପାରିବା ନାହିଁ ।

ଖାଲି ଗୋଲଡିଲକ୍ସ୍ ଅଂଚଳରେ ରହିଗଲେ ହଠାତ୍ ଜୀବନ ଆରମ୍ଭ ହୁଏ ନାହିଁ । ସେଥିପାଇଁ ସମୟ ଦରକାର । ଯେମିତି, ଆଜିକୁ ୪୫୦ କୋଟି ବର୍ଷ ତଳେ ଯେତେବେଳେ ପୃଥିବୀ ଜନ୍ମ ହେଲା, ସେତେବେଳେ ତ ଜୀବଜନ୍ତୁ ନଥିଲେ କି ମଣିଷ ନଥିଲା । ତାହା ଉତ୍ତପ୍ତ ବାଷ୍ପର ବିରାଟ ପିଣ୍ଡଟିଏ ଥିଲା । ଧୀରେ ଧୀରେ ଥଣ୍ଡା ହେଲା । ଏହାର ପୃଷ୍ଠତଳ ଟାଣ ହେଲା । ପୃଥିବୀପୃଷ୍ଠରେ ସମୁଦ୍ର ସୃଷ୍ଟି ହେଲା । ବିନା ଜୀବରେ ବିତିଗଲା ୧୦୦ କୋଟି ବର୍ଷ । ତା'ପରେ ଜଳ ଭିତରେ ଏକକୋଷୀ ଜୀବନର ଆରମ୍ଭ ହେଲା । ଏକକୋଷୀରୁ ବହୁକୋଷୀ ଜୀବନ ସମ୍ଭବ ହେଲା । ନାନା ଜାତିର ପ୍ରାଣୀ ସୃଷ୍ଟି ହେଲେ । ଯାହା ପ୍ରମାଣ ମିଳିଛି, ପୃଥିବୀ ପୃଷ୍ଠରେ ମଣିଷର ଆବିର୍ଭାବ ହେଲା ଏଇ ମାତ୍ର ୫୫ ଲକ୍ଷ ବର୍ଷ ତଳେ । ଅର୍ଥାତ୍ ପୃଥିବୀର ବୟସ ୧ ଦିନ ହେଲେ ମଣିଷର ଜନ୍ମ ମାତ୍ର ୨ ମିନିଟ ତଳେ ହୋଇଛି । ତେଣୁ ଆମେ ସେମିତିକା ଗ୍ରହକୁ ଖୋଜିଚାଲିଛୁ, ଯିଏକି ଗୋଲଡିଲକ୍ସ୍ ଅଂଚଳରେ ଥିବ ଏବଂ ପ୍ରାୟ ୧୦୦ କୋଟି ବର୍ଷ ରହିଥିବ । କେବେ ସେମିତିକା ଗ୍ରହର ସନ୍ଧାନ ମିଳିବ, ସେହି ଖବର ଶୁଣିବା ପାଇଁ ଆମେ ଅପେକ୍ଷା କରି ରହିବୁ ।

ଭଦ୍ରକ ଅଟୋନମସ୍ କଲେଜ, ଭଦ୍ରକ,



# ଚେଙ୍ଗ ବେଙ୍ଗ ଗଲେ ବଙ୍ଗ ବଜାର

## ଡ. ରାମଚନ୍ଦ୍ର ନାୟକ

ଚେଙ୍ଗ ବେଙ୍ଗ ଦୁହେଁ ହୋଇଲେ ସାଙ୍ଗ
ବାହାରିଲେ ଯିବେ ପଶ୍ଚିମବଙ୍ଗ ।
ସଜେଇ ହୋଇଲେ ନିଜର ଅଙ୍ଗ
ଡେଇଁକି ବସିଲେ ଡଙ୍ଗାର ମଙ୍ଗ ।
ଜଣେ ମଙ୍ଗୁଆଳ ବହୁତ ଢେଙ୍ଗା
ଆରେକ ବାଙ୍ଗରା ନିଶୁଆ ଟିଙ୍ଗା ।
ଢେଙ୍ଗା ଧରିନେଲା ଆହୁଲା ଡାଙ୍ଗ
କହିଲା ସହଳ ତଳେଇ ଟାଙ୍ଗ ।
ଏ ବେଳେ ବାଙ୍ଗରା କରୁଛୁ ରଙ୍ଗ
ପଡ଼ିଲାଣି ଗଣ୍ଡ ନିଠେଇ ଢୁଙ୍ଗ ।
ମଥା ପାତେଇକି ଭାଙ୍ଗୁଛୁ ମାଙ୍ଗ
ଛାଡ଼ିକି ସେ କାମ ସୁଅକୁ ଭାଙ୍ଗ ।
ବାଙ୍ଗରା କହଇ ଶୁଣରେ ଢେଙ୍ଗା
କାହିଁକି କରୁଛୁ ମଝିରେ ଦଙ୍ଗା ।
ଜାଣିଲିଣି ମୁହିଁ ତୋହରି ଢଙ୍ଗ
ସର୍ବଦା ହେଉଛୁ ତୁ ଟଙ୍ଗ ଟଙ୍ଗ ।
ଚଙ୍ଗଚଙ୍ଗ ହେଲେ ଚଳିବ ନାହିଁ
ବଙ୍ଗ ବଜାରକୁ ଯିବାରେ ବାହି ।
କଙ୍ଗରା କାଠର ଡଙ୍ଗାକୁ ନେଇ
ପହଞ୍ଚିଗଲେ ସେ କୂଳରେ ଯାଇ ।
ଚେଙ୍ଗ ବେଙ୍ଗ ଦୁହେଁ ହଲାଇ ନାଆ
ଡେଇଁକି ଧାଇଁଲେ ଆପଣା ଠାଆ ।

ଅତାସାହି, କେନ୍ଦୁଝର, ପିନ୍-୭୫୮୦୧୫

# ସାଧାରଣ ଜ୍ଞାନ ପରୀକ୍ଷା

## ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ

୧। ଭାରତର ସ୍ୱାଧୀନତା ସଂଗ୍ରାମ ସମୟରେ କିଏ 'ବମ୍ବେ କ୍ରୋନିକ୍ଲ' (Bombay Chronicle) ନାମକ ସମ୍ବାଦପତ୍ରର ଶୁଭାରମ୍ଭ କରିଥିଲେ ?

୨। ନିକଟରେ କିଏ ବଙ୍ଗ ବିଭୂଷଣ-୨୦୧୮ ସମ୍ମାନରେ ସମ୍ମାନିତ ହୋଇଛନ୍ତି ?

୩। ଓରାଙ୍ଗ ଜାତୀୟ ଉଦ୍ୟାନ କେଉଁ ରାଜ୍ୟରେ ଅବସ୍ଥିତ ?

୪। ଆମ ଦେଶର ଜାତୀୟ ଆତଙ୍କବାଦ ନିରୋଧୀ ଦିବସ କେବେ ପାଳନ କରାଯାଇଥାଏ ?

୫। ଭାରତୀୟ ନିଜର୍ଭ ବ୍ୟାଙ୍କର ଜାତୀୟକରଣ କେବେ କରାଯାଇଥିଲା ?

୬। କେଉଁ ପ୍ରସିଦ୍ଧ ଚିତ୍ରକର ଏକ ସମୟରେ ଗୋଟିଏ ହାତରେ ଲେଖୁଥିବାବେଳେ ଅନ୍ୟ ହାତରେ ଚିତ୍ର ଆଙ୍କିପାରୁଥିଲେ ?

୭। ଓଡ଼ିଶା ପର୍ଯ୍ୟଟନ ବିକାଶ ନିଗମର ଅଧ୍ୟକ୍ଷ ଭାବରେ କିଏ ନିଯୁକ୍ତ ହୋଇଛନ୍ତି ?

୮। UIDAI ର ପୂର୍ଣ୍ଣରୂପଟି କ'ଣ ?

୯। ଲୋକସଭା ପାଇଁ ନିର୍ଦ୍ଧାରିତ ହୋଇଥିବା ସର୍ବାଧିକ ସଭ୍ୟ ସଂଖ୍ୟା କେତେ ?

୧୦। ଅଧୁନା ଆଚାର୍ଯ୍ୟ ଦେବବ୍ରତ କେଉଁ ରାଜ୍ୟର ରାଜ୍ୟପାଳ ଅଛନ୍ତି ?

ଦୁର୍ଗାପୁର, ତାଳଚେର. ଅନୁଗୁଳ- ୭୫୯୧୦୦
(ଉତ୍ତର ୩୬ ପୃଷ୍ଠାରେ)



# ସଙ୍ଗୀତ ପାଇଁ ତ୍ୟାଗ

ଶ୍ରୀ ଶୂନ୍ୟବାଣୀ ବେହେରା

ଗୋଟିଏ ଗାଁରେ ଜଣେ ବୁଢ଼ା ଥିଲେ । ସେ ସେହି ଗାଁର ପିଲାମାନଙ୍କ ପାଇଁ ଜଣେ ଗାଳ୍ପିକ ଥିଲେ । ସବୁଦିନ ସନ୍ଧ୍ୟାରେ ପିଲାମାନେ ଆସି ତାଙ୍କ ପାଖରେ ବସନ୍ତି । ପିଲାମାନେ ତାଙ୍କୁ ରଘୁ ଅଜା ବୋଲି ଡାକୁଥିଲେ । ପ୍ରତିଦିନ ସନ୍ଧ୍ୟାରେ ରଘୁଅଜା ମିଠା ମିଠା ଗପ କୁହନ୍ତି । ଦିନେ ସନ୍ଧ୍ୟାରେ ମେଘ ମାଡ଼ି ଆସୁଥାଏ, କଳାବାଦଲ ଘୋଟି ଆସୁଥାଏ । ପିଲାମାନେ ଆସି ତାଙ୍କ ପାଖରେ ବସିଗଲେ । ସେହି ସନ୍ଧ୍ୟାରେ ରଘୁ ଅଜା ଏକ ଗୀତ ଗାଇଲେ; କିନ୍ତୁ ପିଲାମାନଙ୍କୁ ଜମା ଭଲ ଲାଗୁ ନ ଥାଏ । ପିଲାମାନଙ୍କର ଇଚ୍ଛା ଗପ ଶୁଣିବାରେ । ଏହା ଜାଣି ରଘୁଅଜା କହିଲେ- ଆଜି ମୁଁ ସଙ୍ଗୀତକୁ ଆଧାର କରି ଏକ ଗପ କହିବି । ଜଣେ ରାଜା ସଙ୍ଗୀତ ପାଇଁ କିପରି ତାଙ୍କର ସବୁକିଛି ତ୍ୟାଗ କରିଦେଇଥିଲେ ଶୁଣ ।–

ଥରେ ଜଣେ ଯୁବକ ଏକ ଜଙ୍ଗଲରେ ବସି ବଂଶୀ ବଜାଉଥିବା ବେଳେ ସେଇ ରାଜ୍ୟର ମନ୍ତ୍ରୀ ଶୁଣି ମୁଗ୍ଧ ହୋଇଯାଇଥିଲେ ଏବଂ ତାଙ୍କୁ ରାଜାଙ୍କୁ ପାଖକୁ ନେଇ ଗଲେ । ରାଜାଙ୍କୁ ସଙ୍ଗୀତ ଶୁଣିବାକୁ ବହୁତ ଭଲଲାଗେ । ରାଜା ତାଙ୍କର ବଂଶୀ ଓ ସଙ୍ଗୀତ ଶୁଣିବା ମାତ୍ରେ ତାଙ୍କୁ ରାଜମହଲରେ ରହିବା ପାଇଁ ସ୍ଥାନ ଦେଇଥିଲେ । ସେ ସବୁବେଳେ ରାଜାଙ୍କ ପାଖରେ ରହୁଥିଲେ । ଦିନେ ରାଜାଙ୍କର ବହୁତ ଇଚ୍ଛା ହେଲା ଶିକାର କରିବାପାଇଁ । ତେଣୁ ରାଜା ତାଙ୍କର ଗାୟକ, ମନ୍ତ୍ରୀ, ସେନାପତି ଓ କେତେକ ଘୋଡ଼ା ଓ ସାମନ୍ତଙ୍କୁ ନେଇ ଶିକାର କରିବାକୁ ଗଲେ ।

ରାଜା ଗୀତ ଶୁଣି ଶୁଣି ଆଗକୁ ଚାଲିଛନ୍ତି । ବାଟରେ ଗଲାବେଳେ ଦେଖିଲେ ଗୋଟିଏ ମାହୁନ୍ତ ତା'ର ହାତୀକୁ ବହୁତ ଜୋର୍‌ରେ ମାରୁଛି; କିନ୍ତୁ ହାତୀଟି ଜମା ଉଠୁନାହିଁ । ହାତୀର ଆଖିରୁ ଲୁହ ବୋହଣଥାଏ । ରାଜା ଏହା ଦେଖି, ତାଙ୍କ ମନରେ ଆଘାତ ହେଲା । ତେଣୁ ସେ ଆଦେଶ ଦେଲେ ମାହୁନ୍ତଟିକୁ ନେଇ ଆସିବା ପାଇଁ ଏବଂ କହିଲେ– ଏ ରାଜ୍ୟ ଛାଡ଼ିଯିବାକୁ ନଚେତ୍ ମୃତ୍ୟୁଦଣ୍ଡ ଦିଆଯିବ । ମାହୁନ୍ତ ଏହା ଜାଣି ରାଜ୍ୟ ଛାଡ଼ି ପଳାଇଲା । ଏହା ପରେ ଗାୟକ ହାତୀ ପାଖରେ ବସି, ତା ପିଠିକୁ ଆଉଁସି ଦେଇ ଏକ ସୁନ୍ଦର ସଙ୍ଗୀତ ଆରମ୍ଭ କଲା । କିଛି ସମୟ ପରେ ହାତୀଟି ଉଠି ଠିଆହେଲା । ଗାୟକ ତା'ର ଶୁଣ୍ଢକୁ ଆନନ୍ଦରେ ଧରି ଗୀତ ଶୁଣାଇ ରାଜାଙ୍କ ପାଖକୁ ନେଇଗଲା । ରାଜା ସେହି ହାତୀଟିକୁ ଦେଖି ଚମକି ପଡ଼ିଲେ– 'ସଙ୍ଗୀତର ସ୍ୱର ଏପରି ବି ହୋଇପାରେ, ଯାହା ଅସୁସ୍ଥକୁ ସୁସ୍ଥ କରିପାରେ । ଗାୟକକୁ ପଚାରିଲେ- ତୁମେ ଏପରି ଗୀତ ଶିଖିଲ କିପରି ? ଗାୟକ କହିଲେ- ମୋ ଗୁରୁ ମୋତେ ଶିଖାଇଥିଲେ । ତା'ପରେ ରାଜା ପୁଣି ପଚାରିଲେ- ତୁମର ଗୁରୁ କିଏ ? ସେ କେଉଁଠାରେ

ଅଛନ୍ତି ? ତୁମେ ଟିକେ ତାଙ୍କ ସହିତ ମୋର ସାକ୍ଷାତ କରାଇଦେବ ? ଗାୟକ କହିଲେ- ଆପଣ ତାଙ୍କ ସହିତ ଦେଖା କରିବାକୁ ହେଲେ ଆପଣଙ୍କୁ ପୋଷାକ ପରିବର୍ତ୍ତନ କରିବାକୁ ପଡ଼ିବ । ଏହା ପରେ ରାଜା ଗାୟକଙ୍କ ସହିତ ପୋଷାକ ବଦଳାଇ ଗୁରୁଙ୍କ ନିକଟରେ ପହଞ୍ଚିଲେ ।

ବହୁଦିନ ପରେ ଗୁରୁ ଓ ଶିଷ୍ୟଙ୍କର ସାକ୍ଷାତ ହେଲା । ଶିଷ୍ୟ କହିବା ପୂର୍ବରୁ ଗୁରୁ ରାଜାଙ୍କର ସୈନ୍ୟ ସାମନ୍ତ ଦେଖି ସବୁ ଜାଣିପାରିଲେ । ପରେ ଶିଷ୍ୟ ଜଣକ ଗୁରୁଙ୍କୁ ଅନୁରୋଧ କରି କହିଲେ- ଏକ ସଙ୍ଗୀତ ଗାନ କରିବାକୁ; କିନ୍ତୁ ଗୁରୁ ମନା କରିଦେଲେ । ଏହା ପରେ ଚିନ୍ତାକରି ତାଙ୍କ ଶିଷ୍ୟ ଏକ ସଙ୍ଗୀତ ଗାନ କରିବା ଆରମ୍ଭ କଲେ ଏବଂ ଜାଣି ଜାଣି ମଝିରେ ଭୁଲ ଗାଇଲେ । ସେହି ସଙ୍ଗୀତଟି ଗୁରୁଙ୍କର ଅତି ପ୍ରିୟ ଥିଲା । ତେଣୁ ଗୁରୁ ନ ସହିପାରି ଗାଇବା ଆରମ୍ଭ କରିଥିଲେ । ଗୁରୁଙ୍କର ଗୀତ ଶୁଣି ଜଙ୍ଗଲ ପଶୁପକ୍ଷୀ ଧୀରେ ଧୀରେ ଆସି ପାଖରେ ବସିଲେ । ରାଜା ଗୁରୁଙ୍କ ସଙ୍ଗୀତର ଯାଦୁକରୀ ସ୍ୱରର ପ୍ରଭାବରେ ଆଶ୍ଚର୍ଯ୍ୟ ହୋଇପଡ଼ିଲେ ଏବଂ ତାଙ୍କୁ ଲାଗିଲା ଭଗବାନ୍ ନିଜେ ଆସି ତାଙ୍କ ଆଗରେ ଗାନ କରୁଛନ୍ତି ।

ପରେ ରାଜା ତାଙ୍କ ପରିଚୟ ପ୍ରଦାନ କରିଥିଲେ ଏବଂ ଗୁରୁଙ୍କ ଗୁରୁ ବୋଲି ଡାକିଥିଲେ । ଗୁରୁ କିନ୍ତୁ କହିଥିଲେ-ତୁମେ ମୋର ଶିଷ୍ୟ ହେବାକୁ ହେଲେ ତୁମକୁ ତିନି ମାସ ଜଙ୍ଗଲରେ ରହିବାକୁ ପଡିବ । ରାଜା ଏଥିରେ ରାଜି ହୋଇଗଲେ । ରାଜାଙ୍କର ସଙ୍ଗୀତ ଶିକ୍ଷା କରିବା ପାଇଁ ବହୁ ଆଗ୍ରହ ଥିଲା । ତେଣୁ ରାଜା ଜଙ୍ଗଲରେ ତିନିମାସ ରହିଲା ପରେ ଫେରିଲେ । ଗୁରୁ ତାଙ୍କୁ ପଚାରିଲେ- ତୁମେ କହିପାରିବ କେଉଁ ପଶୁପକ୍ଷୀର ସ୍ୱର କିପରି ? ରାଜା ଏଥିରେ ତାଙ୍କର ଅଜ୍ଞତା ପ୍ରକାଶ କରିଥିଲେ । ଏହାଶୁଣି ଗୁରୁ ପୁଣି ତିନି ମାସ ପାଇଁ କାଙ୍କୁ ଜଙ୍ଗଲକୁ ପଠାଇଦେଲେ । ରାଜା ଜଙ୍ଗଲରେ ରହି ସବୁପଶୁପକ୍ଷୀର ସ୍ୱର ମନେରଖିଲେ ଓ କେତେକ ପଶୁପକ୍ଷୀଙ୍କର ସାଥୀ ହୋଇଯାଇଥିଲେ ।

ତିନିମାସ ପରେ ରାଜା ପୁଣି ଗୁରୁଙ୍କ ପାଖକୁ ଆସିଲେ । ଏହାପରେ ରାଜାଙ୍କୁ ଗୁରୁ ପଚାରିଥିଲେ- କେଉଁ ସମୟରେ କେଉଁ ସଙ୍ଗୀତ ବୋଲାଯାଏ, ଜାଣିଛ କି ? ରାଜା ସଙ୍କୋଚତାର ସହିତ ଅକ୍ଷମତା ପ୍ରକାଶ କରିଥିଲେ । ଏହା ଜାଣି ଗୁରୁ ଏକ ଗ୍ରନ୍ଥ ପ୍ରଦାନ କଲେ ଏବଂ କହିଲେ– ସଙ୍ଗୀତ ପାଇଁ ତୁମର କଣ୍ଠକୁ ଓ ନିଜକୁ ପ୍ରସ୍ତୁତକରି ଆସିବ ।

ରାଜା ସେହି ମନ୍ତ୍ର-ପୁସ୍ତକ ନେଇ ଜଙ୍ଗଲକୁ ଚାଲିଗଲେ । ଏହା ମଧ୍ୟରେ ତିନି ମାସ ବଦଳରେ ତିନି ବର୍ଷ ବିତିଗଲା । ଏହି ସବୁ କଥା କରିବା ପରେ ରାଜା ପୂର୍ବେ ଜଣେ ରାଜା ଥିଲେ ବୋଲି ଭୁଲିଗଲେ । ସେ ଦିନେ ଗୁରୁଙ୍କ ଆଶ୍ରମକୁ ଫେରିଲେ । ଗୁରୁ ତାଙ୍କୁ ଦେଖି ଖୁସି ହୋଇଯାଇଥିଲେ ଏବଂ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । ଆଶ୍ରମରେ ରହିବାକୁ ସ୍ଥାନ ମଧ୍ୟ ଦେଇଥିଲେ । ଗୁରୁଙ୍କ ଠାରୁ ରାଜା ସବୁ ଶିକ୍ଷା ଗ୍ରହଣ କରି ଗୁରୁଙ୍କର ମୁଖ୍ୟ ଶିଷ୍ୟ ରୂପେ ପରିଗଣିତ ହୋଇଥିଲେ । ଏହିପରି ୫ ବର୍ଷ ପରେ ଗୁରୁ ତାଙ୍କୁ ଛାଡ଼ି ଚାଲିଗଲେ । ଯିବାପୂର୍ବରୁ ତାଙ୍କୁ ସେ ଆଶ୍ରମର ମୁଖ୍ୟ କରିଦେଇଥିଲେ ।

ରଘୁ ଅଜାଙ୍କର ଗପ ଏଇଠି ସରିଲା । ପିଲାମାନେ ମଧ୍ୟ ଶୁଣି ଖୁସି ହୋଇଥିଲେ । ଆମେ ଏଥିରୁ ଅନେକ କଥା ଶିଖିବା ଉଚିତ । ତ୍ୟାଗ, ସାଧୁତା, ସହନଶୀଳତା ଓ ନମ୍ରତାର ସହିତ କାର୍ଯ୍ୟ କଲେ ଆମେ ଜୀବନରେ ସଫଳତା ପାଇପାରିବା ।

ଧନୁହର ବେଲାରୀ, ମରିଚପୁର, ବାଲିକୁଦା, ଜଗତ୍‌ସିଂହପୁର

# କୁନୁର୍ ଓ ଉତ୍କାମଣ୍ଡ

ଶ୍ରୀ ଅଜିତାନନ୍ଦ ଗୋସ୍ୱାମୀ

ଛାତ୍ର ଥିଲାବେଳେ ଏକ୍ସକରସନ୍ ବା ପ୍ରମୋଦ ପରିଭ୍ରମଣରେ କୁନୁର୍ ଓ ଉତ୍କାମଣ୍ଡ ଯାଇଥିଲୁ ।

ନୀଳ ବର୍ଣ୍ଣର ମନୋହର ନୀଳଗିରି ପର୍ବତ ପୂର୍ବ ଓ ପଶ୍ଚିମଘାଟ ପର୍ବତମାଳାର ସଂଯୋଗ ସ୍ଥଳରେ ଅବସ୍ଥିତ । ନୀଳଗିରି ପର୍ବତ ଉପରେ ଥିବା କୁନୁର୍ (COONER) ଓ ଉତ୍କାମଣ୍ଡ (OOTKAMUND), ସମୁଦ୍ର ପତନ ଠାରୁ ଯଥାକ୍ରମେ ୨୦୦୦ ମିଟର ଓ ୨୪୩୪ ମିଟର ଉଚ୍ଚତାରେ ଅଛି । (ପ୍ରକାଶ ଥାଉ କି ଏଭେରେଷ୍ଟର ଉଚ୍ଚତା = ୮୮୪୮ ମିଟର) । କୁନୁର୍ ଓ ଉତ୍କାମଣ୍ଡଦ୍ୱୟ ପ୍ରଧାନ ପାର୍ବତ୍ୟ ରେଳ ଷ୍ଟେସନ୍ ଓ ପରସ୍ପରର ଦୂରତା ୧୫ କି.ମି । ଏହାର ଉପରିସ୍ଥ ଅଞ୍ଚଳକୁ ନାରୋ ଗଜ୍ ମାଉଣ୍ଟେନ୍ ଟ୍ରେନ୍ (NARROW GAUGE MOUNTAN TRAIN) ଦ୍ୱାରା ଯିବାକୁ ହୁଏ । ଏହି ଟ୍ରେନ୍‌ର ପଶ୍ଚାତ୍‌ଭାଗରେ ଇଞ୍ଜିନ୍‌ର ପଛପଟ ସଂଯୋଗ ହୋଇଥାଏ । ଇଞ୍ଜିନ୍ ଏହାର ପଛପଟେ ଜୋର୍ ଦେଇ ପାହାଡ଼ର ଉପର ଅଞ୍ଚଳକୁ ଠେଲି ଠେଲି ଚାଳନ କରିଥାଏ । ଟ୍ରେନ୍‌କୁ ଗଭୀର ଉପତ୍ୟକା, ପାହାଡ଼ର ଢାଲୁ ଅଞ୍ଚଳ ଓ କେତେକ ସୁଡ଼ଙ୍ଗ ମଧ୍ୟ ଦେଇ ଯିବାକୁ ହୋଇଥାଏ । ଦର୍ଶକମାନେ ଏଥିରେ ଯାତ୍ରା କଲାବେଳେ ଦୁଇ ପାର୍ଶ୍ୱରେ ପ୍ରାକୃତିକ ଦୃଶ୍ୟ ଦେଖି ବିମୋହିତ ହୋଇଥା'ନ୍ତି ।

(କ) **କୁନୁର୍** (COONER)– କୁନୁର୍‌ରେ ଆକର୍ଷଣୀୟ ପ୍ରାକୃତିକ ଦୃଶ୍ୟ ଓ ଆବର୍ତ୍ତନ ରାସ୍ତାଗୁଡ଼ିଏ ଦେଖିବାକୁ ମିଳିଥାଏ । ଏକ ବିଖ୍ୟାତ ସିମ୍ ପର୍ବତ ଓ ବଟାନିକାଲ୍ ଗାର୍ଡନ (ଯେଉଁଠାରେ ପୃଥିବୀର ପ୍ରସିଦ୍ଧ ଚାରା ଅଣାଯାଇ ରୋପଣ କରାଯାଇଛି ।) କ୍ୱଚିତ୍ ଦେଖାଯାଉଥିବା ସୁରମ୍ୟ ପୁଷ୍ପଗୁଡ଼ିକର ଏକ ଆବରଣ ବିଶେଷ ଆକର୍ଷଣୀୟ । କୁନୁରର ମୁଖ୍ୟ କାର୍ଯ୍ୟାଳୟର ଅନତି ଦୂରରେ ଥିବା ଲେଡି କ୍ୟାନିଂ ସିଟ୍‌ରୁ କୁନୁର୍‌ର ସମଗ୍ର ସୁରମ୍ୟ ଦୃଶ୍ୟ ଏକ ସମୟରେ ଦୃଷ୍ଟିଗୋଚରକୁ ଆସିଥାଏ । କୁନୁର୍‌ର ମେଥାପାଲାୟମ୍‌କୁ ଯାଇଥିବା ରାସ୍ତାରେ କିଛି ଦୂର ଗଲେ ଡଲ୍‌ଫିନ୍ ନୋଜ୍ ଓ କେତେ ଦୂର ଚାଲିଲେ ମେଥାପାଲାୟମ୍ ସହର ପଡ଼େ । ଏହାର କେତେ ଦୂରରେ ଲ୍ୟାମ୍ବସ୍ ରକ୍ ରହିଛି । ଉକ୍ତ ପାହାଡ଼ର



ଡଲ୍‌ଫିନ୍ ନୋଜ୍



ଲ୍ୟାମ୍ବସ୍ ରକ୍

ସିଧା ପାଖରେ ୧୦୦୦ ମିଟର ଗଭୀରକୁ ଦେଖିଲେ ଅନୁନ୍ନତ ଜାତିମାନଙ୍କର ପଲ୍ଲୀଗ୍ରାମ ଦେଖାଯାଏ । ଛୁଟିଦିବସ ଉପଭୋଗ କରିବାକୁ କୁନୁର୍ ହେଉଛି ଏକ ଆଦର୍ଶ ସ୍ଥାନ ।

(ଖ) **ଉତ୍କାମଣ୍ଡ୍**(OOTKAMUND)– ଉତ୍କାମଣ୍ଡକୁ ପର୍ବତମାନଙ୍କର ରାଣୀ ବୋଲି କୁହାଯାଏ । ଉତ୍କାମଣ୍ଡ୍ 'ଉଥଗାମଣ୍ଡଳମ୍'(UTHAGAMANDALAM)ରୁ ହୋଇଛି ଓ ଏହାକୁ ସଂକ୍ଷେପରେ 'ଉଟୀ' (OOTY) କହନ୍ତି । ଏହା ବିଷୁବରେଖାଠାରୁ ୧୧° ଦୂରରେ ଅଛି । ଏହା ମେଥାପାଲାୟମ୍ ସହରଠାରୁ ୪୪ କି.ମି ଦୂରରେ ଅବସ୍ଥିତ । ଉତ୍କାମଣ୍ଡ୍ ହେଉଛି ସ୍ୱାସ୍ଥ୍ୟ ଓ ଛୁଟି ଦିବସ ପାଇଁ ଏକ ଆମୋଦଦାୟକ ବିହାର ସ୍ଥଳ । ପରିଦର୍ଶନସ୍ଥଳୀଗୁଡ଼ିକ ହେଉଛି ଏଠାରେ ଥିବା ହ୍ରଦ, ବଟାନିକାଲ୍ ଗାର୍ଡେନ୍, ଉଟୀଠାରୁ ଅନତି ଦୂରରେ ଥିବା ଅତ୍ୟୁଚ୍ଚ ଦାଦାବେଟା ଶୃଙ୍ଗ ଓ ପଇକାର ଝରଣା ପ୍ରଭୃତି । ସହର ତଳି ଅଞ୍ଚଳରେ ଥିବା ହ୍ରଦରେ ଆକର୍ଷଣୀୟ ନୌକା (କ୍ରୀଡ଼ା ପ୍ରତିଯୋଗିତା) ଚାଳନା ହୁଏ । ଉଟୀ ସହରେ ୟୁରୋପିୟାନ୍‌ମାନଙ୍କର ଯୋଜନା ଅନୁସାରେ ହୋଇଥିବା ଏକ ବଟାନିକାଲ୍ ଗାର୍ଡନ୍ ଏକଶତ ବର୍ଷ ହେବ ତିଷ୍ଠି ରହିଛି । ପୂର୍ବେ ଏଥିରେ ଦୁଷ୍ପ୍ରାପ୍ୟ ବୃକ୍ଷଗୁଡ଼ିକର ଚାରା ରୋପଣ କରାଯାଇଥିଲା । ଏବେ ଏଥିରେ ବିଭିନ୍ନ ପ୍ରକାରର ଆକର୍ଷଣୀୟ ପୁଷ୍ପ ବୃକ୍ଷଗୁଡ଼ିଏ ରହିଛି ।

ଭାରତରେ ଏହା ସର୍ବଶ୍ରେଷ୍ଠ ଗାର୍ଡେନ ଭାବେ ପରିଗଣିତ ହୋଇଛି । ମାଡ୍ରାସ୍ (ଚେନ୍ନାଇ) ସରକାର ଉକ୍ତ ବଟାନିକାଲ୍ ଗାର୍ଡେନ୍‌ର ପରିଚାଳନା ଭାର ନେଇଛନ୍ତି ।

ଅଚ୍ୟୁତାନନ୍ଦ ମାର୍ଗ, ଅରୁଣୋଦୟ ନଗର, କଟକ- ୧୨

ଧନ୍ଦାର ଉତ୍ତର- ଶିବରାତ୍ରୀ

# ସାହିତ୍ୟଜ୍ଞାନ ପରୀକ୍ଷା

୧ । ଉତ୍କଳ ସାହିତ୍ୟ ସମାଜର କେନ୍ଦ୍ର କାର୍ଯ୍ୟାଳୟର ନାମ କ'ଣ ?

୨ । 'ବନ୍ଦେ ଉତ୍କଳ ଜନନୀ'ର କବି କେଉଁ ମାସିକ ପତ୍ରିକାର ସମ୍ପାଦକ ଥିଲେ ?

୩ । କିଏ 'ଲୋକରତ୍ନ' ଉପାଧିରେ ପରିଚିତ ?

୪ । କ କହିଲା, 'ମୋ ପାଖେ ଥିବା ବହିର ଲେଖକ ଓ ପ୍ରକାଶକ ଭିନ୍ନ ଭିନ୍ନ ବ୍ୟକ୍ତି' । ଖ କହିଲା, 'ମୋ ପାଖେ ଥିବା ବହିର ଲେଖକ ଓ ପ୍ରକାଶକ ଜଣେ ବ୍ୟକ୍ତି ।' କାହା କଥା ଠିକ୍ ?

୫ । 'ଜାଣିବାକୁ ଇଚ୍ଛୁକ', 'ଯାହା ପୂର୍ବେ ଘଟି ନ ଥିଲା'– ଗୋଟିଏ ଗୋଟିଏ ଶବ୍ଦରେ କ'ଣ ହେବ ?

୬ । ଧର୍ତ୍ତବ୍ୟ କେଉଁ ଧାତୁରେ କି ପ୍ରତ୍ୟୟ ହୋଇଛି ?

୭ । .... .... .... ....
ତାକୁ କୁଲା ଡାଉଁ ଢାଉଁ ଡରା ।
ଏ ଢଗର ପ୍ରଥମ ପଦଟି ଲେଖ ।

୮ । ଏ ପଚା ଆମ୍ବ କିଏ କିଣିବ ? (ବାକ୍ୟଟିକୁ ନାସ୍ତିବାଚକ କର ।)

୯ । ସେ ଫେଲ୍ ହେବା ଅତି ଦୁଃଖଦାୟକ– ବାକ୍ୟରେ କର୍ତ୍ତା କିଏ ?

୧୦ । 'ସମ୍ରାଟ'ର ସ୍ତ୍ରୀଲିଙ୍ଗ ଏବଂ 'ଆରୋହଣ'ର ବିପରୀତାର୍ଥବୋଧକ ଶବ୍ଦ କ'ଣ ?

*(ଉତ୍ତର ୪୨ ପୃଷ୍ଠାରେ)*



# ସାମାନ୍ୟ କଥା

ଶ୍ରୀ କାଞ୍ଚନାରାୟଣ ମହାନ୍ତି ।

ପାଚେରୀ ଭିତରେ ଗଛର ମୂଳ, ଅଗ ଅଛି ରାସ୍ତାର ଷାଠିଏ ଫୁଟ ଉଚ୍ଚରେ । ନଡ଼ିଆ ଗଛ ପୁଣି ସହର ଭିତର କଲୋନି ରାସ୍ତା କଡ଼ରେ । ନଡ଼ିଆ ବାହୁଙ୍ଗା ଶୁଖିଲେ ରାସ୍ତା ଉପରେ ଝଡ଼େ, ନଡ଼ିଆ ଶୁଖିଲେ ରାସ୍ତା ଉପରେ ପଡ଼େ ।

ବାହୁଙ୍ଗା ଝଡ଼ିଲେ ଆଠ ଦିନ ପଡ଼ିରହେ । ତା'କୁ କିଏ କେତେବେଳେ ଜାଳିବାକୁ ନେଇଯାଏ; କିନ୍ତୁ ନଡ଼ିଆ ଝଡ଼ିଲେ ତା'କୁ ଏମିତି ଭାବରେ ଭାଙ୍ଗି ନିଆଯାଏ, ଦେଖିବାର କଥା ।

ମୋ ଉପର ଘରର ପଛ ଝରକା କାଚ ଦେଇ ନଡ଼ିଆ ଗଛର ପ୍ରତିଟି ନଡ଼ିଆ କେହି ନ ଦେଖିଲାବେଳକୁ ଚଟାପଟ୍ ଘର ଭିତରକୁ ଚାଲିଆସିବ, ଏଇ ଚକ୍କରରେ ଥିବା ରାସ୍ତା ଦୁଇ ପାର୍ଶ୍ୱରେ ପାଖାପାଖି ଚାରି ପାଞ୍ଚଟି ପରିବାରଙ୍କର ଯେମିତି ନିଦ ନାହିଁ– ସେ ସବୁ ଦେଖିବାର ମଜା ମିଳିଥାଏ ।

ରାତି ଦି'ଟାରେ ଯଦି ନଡ଼ିଆ ପଡ଼ିବାର ଦୁମ୍‌କିନା ଶବ୍ଦ ହେଲା, ତେବେ ଚାରିପାଞ୍ଚଟି ଅନ୍ଧାରି ବନ୍ଦ ଘରର କିଳିଣି ଖୋଲିବା ସହ କବାଟ ଖୋଲିବା ଶବ୍ଦ ନିଶ୍ଚୟ ହେବ । ପଡ଼ିବା ମାନେ ଉଭାନ୍ ହୋଇଯିବ ।

ସେମାନେ ପୁଣି କେହି ସାମାନ୍ୟ ଲୋକ ନୁହଁନ୍ତି, ଜଣଙ୍କର ଜଗତପୁରରେ ଫ୍ୟାକ୍‌ଟ୍ରି, ଅନ୍ୟଜଣଙ୍କର ଗାଡ଼ିଘୋଡ଼ା, ପୁଅ ବିଦେଶରେ, ଅନ୍ୟ ଜଣେ ରିଟାୟାର୍ଡ ଅଫିସର୍, ଆଉ ଜଣେ ନିତି ଭୁବନେଶ୍ୱର ଯାଉଥିବା ଡେପୁଟି ଡିରେକ୍ଟର । ଯେଉଁମାନଙ୍କ ପାଇଁ ନଡ଼ିଆଟାଏ କିବା କଥା ? କେତେ ବା ଦାମ୍ ଗୋଟିଏ ନଡ଼ିଆର ?

ନିଜ ମାନସମ୍ମାନ ବିକି ସେମାନେ ରାତି ଅଧରେ ଯେଉଁ କଳିଗୋଳ ଆରମ୍ଭ କଲେ, କାନରେ ଶୁଣି ହେବନାହିଁ ।

ସେଦିନ ରାତି ପାଖାପାଖି ଏଗାରଟା । ବର୍ଷା ସାଙ୍ଗକୁ ଘଡ଼ଘଡ଼ି, ବିଜୁଳି । ଅସୁରି ପରେ ଅସୁରି ପବନ ଆସି ନଡ଼ିଆ ଗଛର ଅଗକୁ ଦୋହଲାଇ ଦେଉଛି । ଚହଲିଯାଉଛି ପଡ଼ିଶାଙ୍କ ମନ ।

ହେଲେ ସେଇ ଚାରିଘର ଲୋକଙ୍କର ଦୃଷ୍ଟି ନଡ଼ିଆ ଗଛରେ ରହିଛି । ଆଜି ପାଗରେ ତ ଦି'ଚାରିଟା ନିଶ୍ଚୟ ଝଡ଼ିବ । ଯାହାଙ୍କ ପିଲା ବିଦେଶରେ, ସେ ବୁଢ଼ାଙ୍କର ଚଲାବୁଲା କମିଗଲାଣି । ବୁଢ଼ୀ କିନ୍ତୁ ନଡ଼ିଆ ଗୋଟେଇ ଆଣିବାର କ୍ଷିପ୍ର କୌଶଳରେ ପ୍ରବୀଣା ।

ସେଦିନ ଯୋଗକୁ ନଡ଼ିଆଟା ପଡ଼ିଲା ବେଳକୁ ମୁଁ ଉପର ଘର କାଚ ଝର୍କାରେ ଦେଖୁଛି । ରିଟାୟାର୍ଡ ଅଫିସର୍ ଚଟାପଟ ନଡ଼ିଆଟାକୁ ଧରି କିଏ ଦେଖିବ ବୋଲି ଗାମୁଛା ଘୋଡ଼େଇ ଚାଲି ଯାଉଥିବାବେଳେ, ସେଇ ନଡ଼ିଆଟିକୁ ଆଖେଇଥିବା ଡେପୁଟି ଚଟ୍‌କିନା ତାଙ୍କ ପଛରୁ ଆସି ନଡ଼ିଆଟାକୁ ଟାଣି ନେଇଯାଇ କହିଲେ– ଗଛଟାକୁ ମୁଁ ଦିନରାତି ଜଗିଛି । ମୋ ଘର ପାଖ ଗଛ । ବୁଢ଼ୀଲୋକଟି ନଡ଼ିଆ ପଡ଼ିବାକୁ କାନେଇଥିଲା । କବାଟ ଖୋଲି ସିଏ

ଛତା ଧରି ଆସିବା ଭିତରେ, ଏପଟେ ତା' ହାତରୁ ନଡ଼ିଆଟି ଅନ୍ୟ ହାତକୁ ଚାଲିଗଲାଣି ।

ବୁଢ଼ୀ ଆସି ସେ ଦୁହିଙ୍କୁ ବୁଝେଇବାକୁ ଆରମ୍ଭ କଲା । କେହି ନ ଶୁଣିପାରିଲା ଭଳି ଚାପା ଗଳାରେ କହିଲା– ଦେଖ, କଲୋନି ସାରା ଲୋକ ଜାଣିବେ । ଆମ ଭଳିଆ ଭଲ ଘରର ଲୋକ ପରଗଛ ନଡ଼ିଆ ଚୋରି କରୁଛୁ । ଆମେ କ'ଣ ନଡ଼ିଆ କିଣିପାରିବା ନାହିଁ ? ଭାରି ଖରାପ କଥା ହେବ । ମୁଁ ଏ ନଡ଼ିଆକୁ ଆଡ଼ଆଖିରେ ଜମା ଅନାଏ ନାହିଁ ।

ଏତେ ରାତିରେ ଏଡ଼େ ବଡ଼ ପାଟି କରି ସାମାନ୍ୟ ନଡ଼ିଆଟାକୁ ନେବାକୁ ଛଡ଼ାଛଡ଼ି ହେଉଛ ? ଛି, ଛି, ତମ ଘର ଲୋକ ଜାଣିଲେ ତମକୁ କ'ଣ ଭାବିବେ ?

ଆଉ ପାଟି ନ କରି ନଡ଼ିଆଟାକୁ ମୋତେ ଦେଇଦିଅ । ମୁଁ ନଡ଼ିଆ ଗଛ ମାଲିକ ବିଷ୍ଣୁବାବୁଙ୍କୁ ଜଣେଇଦେବି । ସିଏ ଯାହା କହିବେ, ମୁଁ ବୁଝିବି...ହଁ ।

ଚତୁର୍ଥ ଲୋକ ଭାରି ଚାଲାକ୍ । ସେ ଧୀରେ ଧୀରେ ଆସି କହିଲେ– ନଡ଼ିଆ ଗଛ ମୂଳେ ବର୍ଷାବେଳେ ଠିଆ ନ ହୋଇ; ବରଂ ଏ ପାଖକୁ ଚାଲିଆସନ୍ତୁ । ନଡ଼ିଆ ପାଇଁ ଭାଗ ଛିଡୁନି ଯଦି, ତେବେ ଆମ ହନୁମାନ୍ ମନ୍ଦିରକୁ



ଦେଇଦେବା, ଭଲ ହେବ । ମୋତେ ଦିଅନ୍ତୁ ମୁଁ ସେକଥା ବୁଝିବି, ନ ହେଲେ ଗଛ ମାଲିକଙ୍କୁ ଫୋନ୍ କରି କହିଦେବି ।

ପାଠକମାନେ ବିଚାର କରନ୍ତୁ– ନଡ଼ିଆ ଗଛ କାହାର ? ନଡ଼ିଆଟାଏ ପାଇଁ ଅବେଳରେ କେଉଁ ଲୋକମାନଙ୍କର ଲୋଭ କେତେ ? ମାନମହତ ବୋଲି କିଛି ନାହିଁ ।

ଘର ଜିନିଷଟାକୁ ଘରେ ପୂରେଇଦେବା ପାଇଁ କେତେ ନିର୍ଲଜ୍ଜ ହୋଇପାରନ୍ତି ଏମାନେ । ବଚନରେ ଅନ୍ୟକୁ ଉଚ୍ଚ ନିର୍ମଳ ଆଦର୍ଶ କଥା କହୁଥିବେ, ଏଣେ ପର ଘରର ବାଡ଼ିରୁ ସକାଳ ନ ପାହୁଣୁ ନଗି ଧରି ଫୁଲ, ଫଳ ଚୋରିକରୁଥିବେ । ଏ ସବୁ ସଭ୍ୟ, ସମ୍ଭ୍ରାନ୍ତ ମଣିଷମାନଙ୍କର ସ୍ୱଭାବ ।

ଶେଷକୁ କ'ଣ ହେଲା ଜାଣନ୍ତି, ସେମାନଙ୍କ ଭିତରେ ସେଇ ନଡ଼ିଆଟାଏ ପାଇଁ ମାରପିଟା, ପାଟିତୁଣ୍ଡ ଆଉ ଅପଡ଼ ହେବା ଯାଏ ଗଲା ।

ଘର ମାଲିକ ବିପିନ୍ ଷଡ଼ଙ୍ଗୀଙ୍କ ପାଖକୁ ଫୋନ୍ ଧମକ ହେଲା– ଆପଣଙ୍କ ନଡ଼ିଆ ଗଛ କାଟନ୍ତୁ; ନ ହେଲେ ନଡ଼ିଆ ପାଇଁ କେତେ ଲୋକଙ୍କ ମୁଣ୍ଡ ଫାଟିବ ।

ବିପିନବାବୁ ଭାବିଲେ, କାହା ମୁଣ୍ଡରେ ଆଉ ନଡ଼ିଆ ଝଡ଼ିଲା କି ?

ଶେଷକୁ ତାଙ୍କ ପୁଅ ଆସି ଲୋକ ଲଗେଇ ଗଛଟିକୁ ଚାରିଗଡ଼ କରି କାଟିଦେଲେ ।

ଏବେ ନଡ଼ିଆ ଖାଉଥା !

ଏକ ମନ ଏବଂ ପ୍ରଶସ୍ତ ହୃଦୟ ହୋଇଥିଲେ ଆଉ ନଡ଼ିଆ ଗଛ ଲଗେଇ ଫଳ ଖାଉଥା'ନ୍ତେ । ସବୁ କ୍ଷେତ୍ରରେ ଏଇଆ ଚାଲିଛି ! ସାମାନ୍ୟ ବୁଝାମଣା ଅଭାବରେ ମଣିଷ କେତେ କ୍ଷତି କରେ ଜାଣିପାରେ ନାହିଁ ।

ଆଶ୍ରମ, ଶ୍ରୀବିହାର କଲୋନି, କଟକ– ୮

# ଭାରତୀୟ କୋଟିପତି

ଜଣେ ଭାରତୀୟ କୋଟିପତି ତାଙ୍କ କାରରେ ରାସ୍ତାରେ ଯାଉଥିଲେ । ବାଟରେ ଦେଖିଲେ– ଜଣେ ମହାତ୍ମା ପ୍ରବଚନ ଦେଉଥିଲେ ଯେ, 'ଆଜିକାଲି ସମସ୍ତେ ଧନ ପଛରେ ଧାଇଁଛନ୍ତି । ମାତ୍ର ସେମାନେ ଜାଣିନାହାନ୍ତି ଯେ ଏ ଧନକୁ ସେମାନେ ସ୍ୱର୍ଗକୁ ନେଇ ଯାଇ-ପାରିବେନି । ତଥାପି ସେମାନେ ଯେମିତିସେମିତି ଉପାୟରେ ହେଉ ଧନ ସାଇତିବାରେ ଲାଗିଛନ୍ତି । ଏହାଶୁଣି କୋଟିପତି ଜଣକ ରାଗିଗଲେ । ମନେ ମନେ ଭାବିଲେ, 'ଏ ଲୋକଟା ପାଖରେ ଗୋଟିଏ ବି ପଇସା ନାହିଁ; ଅଥଚ ଏ ବଡ଼ ବଡ଼ କଥା ଧନ ବିଷୟରେ କହୁଛି !!'

ତା'ପରଦିନ ସେ ଧନୀ ବ୍ୟକ୍ତି ତାଙ୍କର ଅଫିସର କର୍ମଚାରୀମାନଙ୍କୁ କହିଲେ, ''ମତେ ଏମିତି ଉପାୟ ବତାଅ, ଯେମିତିକି ମୁଁ ମୋର ସମ୍ପତ୍ତି ମୋ ମୃତ୍ୟୁ ପରେ ମଧ୍ୟ ନେଇପାରିବି ।''

କର୍ମଚାରୀମାନେ ଆଶ୍ଚର୍ଯ୍ୟ ହୋଇ କହିଲେ, ''ଆପଣ କ'ଣ ପାଗଳ ? ଏମତି ଉପାୟ ଆମ ପାଖରେ ନାହିଁ ।''

ହଠାତ୍ ଦିନେ ଜଣେ ଲୋକ ଆସି ପହଞ୍ଚି କହିଲେ– ମୁଁ ଶୁଣିଲି ଆପଣ ମୃତ୍ୟୁ ପରେ ଆପଣଙ୍କ ଧନସମ୍ପତ୍ତି ସ୍ୱର୍ଗକୁ ନେବାକୁ ଉପାୟ ଖୋଜୁଥିଲେ ? ମୋ ପାଖରେ ଏକ ସୁନ୍ଦର ଉପାୟ ଅଛି, ମୁଁ ଆପଣଙ୍କୁ ଜଣାଇପାରେ କି ?

ଧନୀ ବ୍ୟକ୍ତି ବିଶ୍ୱାସ କରିପାରିଲେ ନାହିଁ । ସେ ଭାବିଲେ, ''ସମସ୍ତେ ମତେ ପାଗଳ ବୋଲି କହିଲେ, ଏ ଲୋକଟି କଣ କହୁଛି ଦେଖାଯାଉ ।''

ସେ ଆଗନ୍ତୁକଟି ପ୍ରଥମେ ଧନୀବ୍ୟକ୍ତିଙ୍କୁ ପଚାରିଲା, 'ଆପଣ କେବେ ବିଦେଶ ଗସ୍ତ କରିଛନ୍ତି ?' ଧନୀବ୍ୟକ୍ତି କହିଲେ ଯେ, ସେ ବିଦେଶରେ ପ୍ରାୟ ସବୁଦେଶ ଭ୍ରମଣ କରିଛନ୍ତି । ଆଗନ୍ତୁକ ପଚାରିଲେ, ''ଆମେରିକାରେ ଆପଣ କେମିତି ଚଳିଲେ ?'' ଧନୀ ବ୍ୟକ୍ତି କହିଲେ ସେ ଟଙ୍କାକୁ ଡଲାରରେ ପରିବର୍ତ୍ତିତ କରିଥିଲେ । ତା'ପରେ ଇଂଲଣ୍ଡ ଯିବା କଥା ମଧ୍ୟ ପଚାରିଲେ । ଧନୀ ବ୍ୟକ୍ତି ସେଇ ଏକା ଉତ୍ତର ଦେଲେ ଯେ ସେ ଟଙ୍କାକୁ ପାଉଣ୍ଡରେ ପରିବର୍ତ୍ତିତ କରିଥିଲେ ।

ତା'ପରେ ଆଗନ୍ତୁକ ପଚାରିଲେ ଆପଣ ଏମିତି ଟଙ୍କାକୁ କାହିଁକି ବଦଳେଇଲେ । ଏହା ଶୁଣି ଧନୀ ବ୍ୟକ୍ତି ଜଣକ ଖୁବ୍ ହସିଲେ । ତା'ପରେ ସେ କହିଲେ ଯେ ବିଦେଶରେ ଭାରତୀୟ ଟଙ୍କାର କୌଣସି ମୂଲ୍ୟ ନାହିଁ, ସେଥିପାଇଁ ବଦଳେଇବାକୁ ପଡ଼ିଲା । ଆଗନ୍ତୁକ କହିଲେ, ''ଆପଣ ଠିକ୍ କରିଛନ୍ତି ଆଜ୍ଞା । ସେମିତି ଆପଣ ଯଦି ଚାହୁଁଛନ୍ତି ମୃତ୍ୟୁପରେ ଆପଣଙ୍କର ଧନସମ୍ପତ୍ତି ନେଇ ଯିବାକୁ, ସେମିତି ଆପଣଙ୍କର ସମସ୍ତ ସମ୍ପତ୍ତିକୁ ଆପଣଙ୍କୁ ବଦଳେଇବାକୁ ହେବ । ଆଉ ସେଠିକା ମୁଦ୍ରାର ନାମ 'ପୁଣ୍ୟ' । ତେଣୁ ଆପଣଙ୍କ ସମସ୍ତ ଭାରତୀୟ ମୁଦ୍ରାକୁ 'ପୁଣ୍ୟମୁଦ୍ରାରେ' ପରିବର୍ତ୍ତନ କରିବାକୁ ହେବ । ତା'ହେଲେ ମୃତ୍ୟୁପରେ ଆପଣ ସେସବୁକୁ ଆରାମରେ ଉପଭୋଗ କରିପାରିବେ ।''

ଏ କଥା ଶୁଣି ଭାରତୀୟ କୋଟିପତି ଖୁବ୍ ଖୁସି ହେଇଗଲେ ଏବଂ ସେହିଦିନଠାରୁ ସେ ଧର୍ମକାର୍ଯ୍ୟ କରିବାରେ ମନ ଦେଲେ । ଏଥିସହିତ ସେ ଅଭାବୀ ମଣିଷଙ୍କୁ ସାହାଯ୍ୟ କରିବା ଆରମ୍ଭ କଲେ, ପ୍ରତିଦାନର ଆଶା ନକରି ।

–ସଂଗୃହୀତ



# ବନ୍ଧୁ

## ଶ୍ରୀ ବଂଶୀଧର ଖୁଣ୍ଟିଆ

ଅନେକ ଦିନ ତଳର ଏ କଥା । ମୋ ପିଲାବେଳର । ସେତେବେଳେ ମୁଁ ହାଇସ୍କୁଲରେ ପାଠ ପଢୁଥାଏ । ମୋର ଯାହା ମନେପଡୁଛି, ବୋଧହୁଏ ଦଶମ ଶ୍ରେଣୀ ହେବ । ସମୟ ତ କାହାରି ପାଇଁ ଅପେକ୍ଷା କରେନା । ଏହା ଭିତରେ ପ୍ରାୟ ପଚାଶ ବର୍ଷ ଗତ ହୋଇଗଲାଣି । ମୋ ଜୀବନରେ କେତେକଥା କେତେ ଘଟଣା ଘଟିଗଲେଣି । ଏବେ ମୁଁ ବୃଦ୍ଧ । ଘରେ ବସି ମୁଁ ମୋର ଦୂର ଅତୀତକୁ ଖୋଜୁଛି । ବନ୍ଧୁ ଓ ସାଙ୍ଗସାଥୀ ମାନଙ୍କର ମୁହଁ ଚଳଚ୍ଚିତ୍ର ପରି ମୋ ଆଖିଆଗରେ ଭାସି ଉଠୁଛି । ଏ ସଂସାରର ରଙ୍ଗମଞ୍ଚରୁ କେତେଜଣ ଅଭିନୟ ସାରି ଚାଲି ବି ଗଲେଣି । ସେମାନଙ୍କ କଥା ଭାବିଲେ ମୋ ଆଖି ଛଳ ଛଳ ହୋଇଯାଏ । ଏହି କିଛି ମାସ ତଳେ ମୋର ଜଣେ ବନ୍ଧୁ କେଶବଟା ବି ଚାଲିଗଲା । ତା' ଜୀବନରେ ଘଟିଥିବା ଅଭୁଲା ଘଟଣାଟିକୁ ରୂପ ଦେଲାବେଳେ ମୁଁ ଆଜି ତା'ର ଅପୂର୍ବ ସାହସ, ପରୋପକାର ଓ ସେବା ମନୋବୃତ୍ତିକୁ ସ୍ମରଣ କରିବା ସହ ତା ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ।

କେଶବ ଆମ ଅଞ୍ଚଳର ପିଲା ନ ଥିଲା କି ମୋର ସହପାଠୀ ବି ନ ଥିଲା । ଆମଘର ଠାରୁ ତା ଘରର ବ୍ୟବଧାନ ମଧ୍ୟ ଅନେକ ଦୂର । ହେଲେ ଆମେ ଦୁହେଁ ଥିଲୁ ଉତ୍ତମ ବନ୍ଧୁ ଆଉ ସେ ବନ୍ଧୁତ୍ୱ ସୃଷ୍ଟି ହୋଇଥିଲା ସୁଦୂର କୋଲକାତା ସହରରେ । ସେତେବେଳେ ମୋ ବାପା କୋଲକାତା କରପୋରେସନ ଜଳଯୋଗାଣ ବିଭାଗରେ ଜଣେ ମିସ୍ତ୍ରୀ ଭାବରେ କାର୍ଯ୍ୟ କରୁଥିଲେ । ମୋ ବାପା ରହୁଥିଲେ ଚୋରବାଗାନ୍ ଲେନରେ । ଉକ୍ତ ଲେନ୍ ଓ ତା ଆଖପାଖ ଅଞ୍ଚଳରେ ହଜାର ହଜାର ଓଡ଼ିଆ ବାସ କରୁଥିଲେ । ଆମ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଯାଇ ସେଠାରେ ଭିନ୍ନ ଭିନ୍ନ କାର୍ଯ୍ୟକରି ପେଟ ପୋଷୁଥିଲେ ଓ ପରିବାରର ଗୁଜୁରାଣ ମଧ୍ୟ ମେଣ୍ଟାଉଥିଲେ । ଉକ୍ତ ଅଞ୍ଚଳଟି ଓଡ଼ିଶାର ଏକ ବଡ଼ ଗାଁ ପରି ଲାଗେ । ଆମ ବସାରେ ଆଠ ଦଶଟି କୋଠରି ଥିଲା । ସେତିକିରେ ପ୍ରାୟ ତିରିଶ ଚାଳିଶ ଜଣ ଓଡ଼ିଆ ବାସ କରୁଥିଲେ । ପିଲାବେଳେ ମୁଁ ବର୍ଷରେ ପ୍ରାୟ ଦୁଇତିନି ଥର ବାପାଙ୍କ ପାଖକୁ ଯାଉଥିଲି । ବିଦ୍ୟାଳୟର ଲମ୍ବା ଛୁଟିଗୁଡ଼ିକ ମୋର କଟି-ଯାଉଥିଲା ବାପାଙ୍କ ପାଖରେ ସୁଦୂର କୋଲକାତାରେ । ରେଳଯାତ୍ରାରୁ ମୁଁ ପାଉଥିଲି ସର୍ବାଧିକ ଆନନ୍ଦ ।

ମୋର ଦଶମ ଶ୍ରେଣୀ ବର୍ଷ ଖରାଛୁଟିରେ ସେଠାରେ ମୁଁ ପ୍ରଥମେ ଭେଟିଲି ମୋ ଠାରୁ ପ୍ରାୟ ବର୍ଷେ ବଡ଼ ହେବ କେଶବକୁ । ପତଳା ଡେଙ୍ଗା ହୋଇ ପିଲାଟିଏ । ଶାନ୍ତ, ସରଳ ଓ ଭଦ୍ର ଜଣାଯାଉଥାଏ । ମୋତେ ଦେଖି ହସ ହସ ମୁହଁରେ ଓ ନିଜଲୋକ ପରି ମୋ ପଢ଼ାପଢ଼ି କଥା ପଚାରିଲା । ତା ସମ୍ବନ୍ଧରେ ବାପା ମୋତେ ଯାହା କହିଲେ – ''ସେ ଗୋଟିଏ ଗରିବ ଘର ପୁଅ । ବର୍ଷେ ହେଲା ବାପା ଆରପାରିରେ । ଘରେ ମା' ଆଉ ଭଉଣୀଟିଏ । ଜାତିରେ ବାରିକ । ବାପା ନିଜ ବୃତ୍ତିକରି ବଡ଼କଷ୍ଟରେ ଘର ଚଳଉଥିଲା । ସେ ତ ଆଉ ନାହିଁ । ଏ ପୁଅଟି ଗାଁ ବିଦ୍ୟାଳୟରେ ମେଟ୍ରିକ ପଢୁଥିଲା । ଏବେ ତାର ପାଠପଢ଼ା ବନ୍ଦ । ତାଙ୍କ ଗାଁର ଜଣେ ଲୋକ

ତାକୁ ଆଣି ଏଇଠି ଛାଡ଼ିଛନ୍ତି । ଏ ପଡ଼ାରେ ବୁଲି ଲୋକଙ୍କୁ ଖିଅର କରେ । ବେଳେବେଳେ କାମକୁ ବି ଯାଉଛି, ଭଲ ପିଲାଟିଏ ।''

କେଶବକୁ ପାଇ ମୁଁ ବି ବଡ଼ ଖୁସି ହୋଇଗଲି । ଦୁଇଚାରି ଦିନ ମିଶିଲା ପରେ ଜାଣିଲି ବାପା କହୁଥିବା କଥା ସତ । ସତରେ କେଶବଟି ଭାରି ଭଲ । ସମସ୍ତେ କାମକୁ ଚାଲିଗଲା ପରେ ଆମ ବସାରେ ମୁଁ ଏକା ଥାଏ । ଫାଙ୍କା ଫାଙ୍କା ଲାଗେ । ବାପାଙ୍କୁ ଅପେକ୍ଷା କରେ । ଏପରିକି କିନ୍ତୁ ଏ ଅସୁବିଧା ନଥିଲା । କେଶବ ଅଛି, ଗପସପ ହେଉ । ପାଖ ବଜାରକୁ ବୁଲିଯାଉ । ପାର୍କରେ ବୁଲାବୁଲି କରି ମନ ଆନନ୍ଦରେ ବସାକୁ ଫେରୁ ।

ଗରିବ ଘରର ପିଲାଟିଏ ହେଲେ ବି କେଶବଟା ଥିଲା ଭାରି ପରୋପକାରୀ । ବସାରେ କାହାରି ଦେହ ପା' ଖରାପ ହେଲେ ସେ ଜଗିବସେ । ଔଷଧପତ୍ର ଆଣିଦିଏ । କାହାର କେମିତି ହାଟ ବଜାର କରିଦିଏ । ସମସ୍ତେ ତାକୁ ଭଲପାଆନ୍ତି । କାମ ଯୋଗାଇ ଦିଅନ୍ତି । ମୋ ବାପାଙ୍କର ସେ ଆଗ ଡାକରା ଥିଲା । ସେ ତାକୁ ନିଜର ପୁଅଟିଏ ପରି ଦେଖୁଥିଲେ । ମୁଁ ଘରକୁ ଆସିଲେ ତା' କଥା ଭାବେ । ଆଗ ଛୁଟିକୁ ଅପେକ୍ଷା କରେ । ଆମେ ଭିତରେ ନିୟମିତ ଚିଠିପତ୍ର ଦିଆନିଆ ହୁଏ । ସେ ଘରକୁ ଆସିଲେ ଆମଆଡ଼େ ବୁଲିଆସେ ।

ପ୍ରାୟ ତିନିବର୍ଷ ପରେ ତା' ଠାରୁ ଦିନେ ମୁଁ ଚିଠିଖଣ୍ଡେ ପାଇଲି । ପୋଷ୍ଟକାର୍ଡ଼ରେ ସେ ବେଶୀ କିଛି ଲେଖି ନ ଥିଲା । ଏତିକି ଲେଖିଥିଲା, ''ଆଗକୁ ସରସ୍ୱତୀ ପୂଜା ଆସୁଛି । ଏ ବସାରେ ପୂଜା ତୁ କୁଆଡ଼େ ଆରମ୍ଭ କରିଥିଲୁ ବୋଲି ମୁଁ ଶୁଣିଲି । ପୂଜାରେ ଆସିବୁ । ମୋ ଠାରୁ ଭଲ ଖବରଟିଏ ପାଇଲେ ଖୁସି ହେବୁ । ଆସିଲେ କହିବି ।''

ପୂଜାରେ ଗଲି । ସେ ହାଓଡା ଷ୍ଟେସନରୁ ମୋତେ ନେଇଗଲା । ତାର ଦାମୀ ପୋଷାକପତ୍ର ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ଖୁସି ବି ହେଲି । ସେ ମୋତେ ମାଣିକତାଲାର ଗୋଟିଏ ସ୍ଥାନକୁ ନେଇଆସିଲା । ହସି ହସି କହିଲା, ''ଏ କୋଠାଟାକୁ ଦେଖ । ଏହା ଗୋଟିଏ ବ୍ୟାଙ୍କ । ଏଠାରେ ମୁଁ ଚାକିରି କରୁଛି ।''

''ଆରେ ସତେ ? ଚାକିରି । ପୁଣି ବ୍ୟାଙ୍କରେ ! ମୁଁ ବହୁତ ଖୁସି !'' ମୁଁ କହିଲି ।

ସେ ଆରମ୍ଭ କଲା, ''ଚାରିମାସ ତଳର କଥା । ମୁଁ ବିବେକାନନ୍ଦ ରୋଡ଼ର ଫୁଟପାଥ ପାଖରେ ବସି ଖିଅର କରୁଥାଏ । ବିଦ୍ୟାଳୟକୁ ଯାଉଥିବା ସମୟରେ ସାତ କି ଆଠବର୍ଷର ଝିଅଟିଏ ଖୋଲାଥିବା ଏକ ହାଇଡିନ୍ ଭିତରେ ପଡ଼ିଗଲା । ଲୋକେ ଜମା ହୋଇଗଲେ; ମାତ୍ର ଭିତରକୁ ଯାଉଛି କିଏ ? ମାତ୍ର ମୁଁ ପଶିଲି । ଦଶବାର ଫୁଟ ଗଭୀର ପାଣିକାଦୁଅରେ ଭରା ସେ ହାଇଡିନ୍‌ରୁ ତାକୁ ମୁଁ ଉଦ୍ଧାର କଲି । ଗୋଟିଏ ଲୁହା ପାଇପରେ ବାଜି ମୋ ମୁଣ୍ଡ ଫାଟିଗଲା । ତା' ବାପା ଏହି ବ୍ୟାଙ୍କର ଜଣେ ଅଧିକାରୀ । ସେ ମୋତେ ଭଲ କଲେ । ତାଙ୍କ ଦୟାରୁ ମୁଁ ଏଠାରେ ଚାକିରି ଖଣ୍ଡେ ପାଇଛି ।'' ତାର ଏ ମଣିଷପଣିଆ ପାଖରେ ମୋ ମୁଣ୍ଡ ନଇଁଗଲା । ତାକୁ ଧନ୍ୟବାଦ ଦେଲି ।

ପରେ କେଶବ ସେହି ବ୍ୟାଙ୍କରୁ ପ୍ରମୋଶନ ପାଇ ଅବସର ନେଲା । ସେଠାରେ ଘରଖଣ୍ଡେ ବି କିଣିଥିଲା । ତା ପୁଅ ସେଠାରେ ପାଠପଢ଼ି ଚାକିରି କରିଛି । ଏଥର କୋଲକାତା ଯାଇ ଶୁଣିଲି ସେ ଆଉ ନାହିଁ । ମୋ ଆଖିରୁ ଦୁଇଧାର ଲୁହ ଗଡ଼ିଆସିଲା । ତାକୁ ମନେ ମନେ ଏତିକି କହିଲି- କେଶବ, ସ୍ନେହ, ଶ୍ରଦ୍ଧା, ମମତା, ଆନ୍ତରିକତା, ତ୍ୟାଗ, ସାଧନା ଓ ନିଷ୍ଠାର ଫଳ ଈଶ୍ୱର ତୋତେ ଦେଇଥିଲେ ରେ । ତୋ ଅମର ଆତ୍ମା ପ୍ରତି ଏ ବନ୍ଧୁର ପ୍ରଣାମ ।

ସା/ପୋ- ମଉଦା, ଭା-ମାଧବନଗର, ଜି-ଭଦ୍ରକ

# ବଞ୍ଚିବାର ମନ୍ତ୍ର

## ଡ. ଜ୍ୟୋତିର୍ମୟୀ ମହାନ୍ତି

ସେମାନଙ୍କର କ୍ଷୁଦ୍ର ମହାକାଶଯାନଟି ମହାଶୂନ୍ୟରେ ଭାସି ଭାସି ଚାଲିଥାଏ ଏକ ଅଦୃଶ୍ୟ ଶକ୍ତିର ଆକର୍ଷଣରେ । ସେମାନେ କେତେ ବାଟ ଭାସି ଭାସି ଆସିଗଲେଣି କେଜାଣି, ସତ୍ୟମ୍ ଜାଣିପାରୁ ନଥାଏ । ସେ କେବଳ ଏତିକି ଜାଣିଛି ଯେ ଆମ ପୃଥିବୀ ଠାରୁ ପ୍ରାୟ ଆଠଶହ କିଲୋମିଟର ଗଲେ ପଡ଼େ ସଂପୂର୍ଣ୍ଣ ଅନ୍ଧାର । ପୃଥିବୀ ତ ପୃଥିବୀ, ସେମାନଙ୍କ ଯାନ ପୂରା ଆମର ସୌରମଣ୍ଡଳ ପାର ହୋଇ ଅନ୍ୟ ଏକ ସୌରମଣ୍ଡଳକୁ ଯିବ । ତାକୁ ବେଶୀ ଆଶ୍ଚର୍ଯ୍ୟ ଲାଗୁଥାଏ ଯେ ଏହି ଯାନଟିକୁ ସମ୍ପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରୁଥିଲେ ତା'ରି ପରି ଦୁଇଜଣ କୁନି ମହାକାଶଚାରୀ । ଏପରି ଏକ ବିପଦସଙ୍କୁଳ ଯାତ୍ରା, ଯେଉଁ ଯାତ୍ରାରେ କି ସେମାନଙ୍କୁ ପ୍ରାୟ ଚାଳିଶ ଆଲୋକବର୍ଷ ଦୂରତା ଅତିକ୍ରମ କରିବାକୁ ପଡ଼ିବ । ତାର ଦାୟିତ୍ୱ ନ୍ୟସ୍ତ ଥିଲା ଏହି କୁନିଚାଳକ ଦ୍ୱୟଙ୍କ ଉପରେ ।

ହେଲେ ସେ ତା'ର ସାଥୀ ଏହି ଦୁଇଜଣ କୁନି



ମହାକାଶଚାରୀମାନଙ୍କ କଥା କିଛି ବୁଝିପାରୁନଥାଏ; ମାତ୍ର ସେମାନେ ତାକୁ ଚିତ୍ରଦ୍ୱାରା ସବୁ ଜଣାଇ ଦେଉଥାନ୍ତି । ସେ ଯାହା ଜାଣିଲା– ଆମ ସୌରମଣ୍ଡଳ ବାହାରେ ଆଉ ଏକ ଆଠ ଗ୍ରହବିଶିଷ୍ଟ ସୌରମଣ୍ଡଳ ରହିଅଛି, ସେଥିରେ ଅଛି ଆମ ପୃଥିବୀ ସହ କିଛିମାତ୍ରାରେ ସାମଞ୍ଜସ୍ୟ ଥିବା ଏକ ଗ୍ରହ । ଏହି ଗ୍ରହର ଆକାର ପୃଥିବୀଠାରୁ ଅଳ୍ପ ବଡ଼ । ମାତ୍ର ଆମ ବୃହତ୍ତମ ଗ୍ରହ ବୃହସ୍ପତିଠାରୁ ଢେର ସାନ । ଏହି ଗ୍ରହଟିର ନାମ ହେଉଛି 'କେପଲର୍–୮୦' । ସେହି ଚିତ୍ରଦ୍ୱାରା ସେମାନେ ଜଣାଇଦେଲେ ଯେ ଏହି ଗ୍ରହଟିର ଏକ କ୍ଷୁଦ୍ର ଅଂଶରେ ଅଛି ଜୀବନର ସତ୍ତା । ଅଳ୍ପକିଛି ପ୍ରାଣୀ ଓ ଉଦ୍ଭିଦ କେବଳ ଏହି ଅଂଶରେ ପରିଦୃଷ୍ଟ ହୁଅନ୍ତି । ଅନ୍ୟ ଅଂଶଗୁଡ଼ିକ ପ୍ରାୟ ମରୁଭୂମି ପରି ଖାଲି ବାଲୁକାମୟ । ନାହିଁ ଉଦ୍ଭିଦ ବା ନାହାନ୍ତି କୌଣସି ଜୀବନ୍ତ ପ୍ରାଣୀ । ଏହାହିଁ ହେଉଛି ସେମାନେ ଆସିଥିବା ଗ୍ରହର ସ୍ଥିତି । ସେମାନେ ସତ୍ୟମକୁ ସେଠାକୁ ହିଁ ନେଉଛନ୍ତି ।

ଅଳ୍ପ ସମୟ ପରେ ସେମାନେ ସଂକେତ ଦେଲେ ଯେ ଯାନଟି ଏବେ ଅବତରଣ କରିବ । ହେଲେ

---

# ନୀତି ମୁକ୍ତାମାଳା

✪ ବିଶ୍ୱାସ ଏପରିଗୋଟେ ଶବ୍ଦ ଯାହାକୁ ପଢ଼ିବା ପାଇଁ ଗୋଟେ ସେକେଣ୍ଡ ମାତ୍ର ଲାଗେ, ଭାବିବା ପାଇଁ ଗୋଟେ ମିନିଟ୍ ଲାଗେ ବୁଝିବା ପାଇଁ ଗୋଟେ ଦିନ ଲାଗେ ଏବଂ ଉପଯୋଗ କରିବା ପାଇଁ ପୂରା ଜୀବନ ଲାଗିଯାଏ ।

ସେମାନଙ୍କ ଗ୍ରହ କେପଲର-୮୦ରେ ନୁହେଁ, ସେମାନେ ଅବତରଣ କରିବେ, ସେମାନଙ୍କ ଗ୍ରହର ଅତି ନିକଟବର୍ତ୍ତୀ ଗ୍ରହ କେପଲର-୯୦ରେ । ଏହି ଗ୍ରହର ମଧ୍ୟ ତାଙ୍କ ଗ୍ରହ ସହ ଅନେକ ସାଦୃଶ୍ୟ ଅଛି; ମାତ୍ର ଏହା ସଂପୂର୍ଣ୍ଣ ଜନମାନବ ଶୂନ୍ୟ । ଏଠାରୁ ସେମାନଙ୍କୁ କିଛି ତଥ୍ୟ ସଂଗ୍ରହ କରିବାର ଅଛି । ସେମାନଙ୍କ ସହ ସତ୍ୟମ ମଧ୍ୟ ଓହ୍ଲାଇଲା । ସେହି ଗ୍ରହପୃଷ୍ଠରେ ଚାଲିଲାବେଳେ ସେମାନେ ପିନ୍ଧିଥିବା ମହାକାଶ ପୋଷାକ ବେଶ୍ ହାଲୁକା ଲାଗୁଥିଲା । ଆଗରୁ ଏହି ମହାକାଶ ପୋଷାକ ଗୁଡ଼ିକ ଖୁବ୍ ଓଜନିଆ ବୋଲି ସତ୍ୟମ ପତ୍ରପତ୍ରିକାରୁ ପଢ଼ିଥିଲା । ସେମାନେ ଚାଲିଲାବେଳେ ସେହି ପୋଷାକ ଏପରି ଭାବେ ନିର୍ମାଣ କରାଯାଉଥିଲା ଯେ ସେଥିରୁ ଆଲୋକ ବିକିରିତ ହେଉଥିଲା । ଫଳରେ ସେମାନେ ପରସ୍ପରକୁ ଦେଖିପାରୁଥିଲେ । ସେଠାରୁ କିଛି ଧୂଳି ଓ ଶିଳା ସଂଗ୍ରହ କରି ସେମାନେ ସମସ୍ତେ ପୁଣି ତାଙ୍କ ଯାନକୁ ଫେରିଆସିଲେ ।

ଏଥର ମହାକାଶ ଯାନଟି ତାଙ୍କ ଗ୍ରହ ଅଭିମୁଖେ ଚାଲୁଛି ବୋଲି ତାର ସାଥୀ କୁନି ମହାକାଶଚାରୀମାନେ ତାକୁ ସୁଚାଇ ଦେଉଥିଲେ; ମାତ୍ର ସତ୍ୟମ୍ ଦେଖୁଥିବା ଚିତ୍ରଟି ବଦଳିଗଲା । ସେ ଦେଖିଲା ସବୁଜ ଉଦ୍ଭିଦ ଓ ଜୀବନ୍ତ ପ୍ରାଣୀରେ ଭରପୁର ଏକ ଗ୍ରହ, ଯାହା ସେମାନଙ୍କ ଗ୍ରହ କେପଲର-୮୦ । ସତ୍ୟମ ଏପରି ପରିବର୍ତ୍ତନ ଅର୍ଥ କିଛି ବୁଝିପାରିଲା ନାହିଁ । ସେମାନେ ସଂକେତ ଦ୍ୱାରା ବୁଝାଇଦେଲେ, ଏହା ହେଉଛି ଦୁଇ ହଜାର ବର୍ଷ ତଳର ତାଙ୍କ ଗ୍ରହର ଅବସ୍ଥା । ଧୀରେ ଧୀରେ କେମିତି କେଜାଣି ତାଙ୍କ ଗ୍ରହର ସ୍ଥିତିରେ ଏକ ଅସନ୍ତୁଳିତ ଅବସ୍ଥା ଆସିଲା । ଲୋକମାନଙ୍କୁ ଅଧିକ ସୁଖରେ ରଖିବାକୁ ଶିଳ୍ପର ବିକାଶ ଘଟିବା ସହ ଯାନବାହନ ଚଳାଚଳ ମଧ୍ୟ ବହୁତ ବଢ଼ିଚାଲିଲା । ଏଥି ସହ ଜଳବାୟୁର ଦ୍ରୁତ ପରିବର୍ତ୍ତନ ଆସିଲା । ଏହାର ପ୍ରଧାନ କାରଣ ହେଲା ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସର ପରିମାଣ ବଢ଼ିଚାଲିଲା ଆଉ ଏହି ଗ୍ୟାସ ଟାଣି ଧରିଲା ତାପମାତ୍ରାକୁ । ତେଣୁ ଗ୍ରହପୃଷ୍ଠର ତାପମାତ୍ରା ମଧ୍ୟ ବଢ଼ି ବଢ଼ି ଚାଲିଲା । ଏହି ତାପମାତ୍ରା ବୃଦ୍ଧିଦ୍ୱାରା ଦୁଇମେରୁ ପାଖରେ ଥିବା ବରଫର ପାହାଡ଼ ତରଳିବାରେ ଲାଗିଲା ଆଉ ବୃଦ୍ଧି ପାଇଲା ସମୁଦ୍ରର ଜଳପତ୍ତନ । ତରଳିବାକୁ ଲାଗିଲେ ବରଫାବୃତ ଗ୍ଲାସିୟରମାନେ । ଦୋହଲିଗଲା ପ୍ରକୃତିରାଣୀର ସୁନ୍ଦର ସଜ୍ଜିତ ଅବସ୍ଥା । ମାଡ଼ିଆସିଲା ସୁନାମି, ପ୍ରବଳ ବର୍ଷା, ବନ୍ୟା, ବାତ୍ୟା, ଭୂମିକମ୍ପ ଇତ୍ୟାଦି ପ୍ରାକୃତିକ ବିପର୍ଯ୍ୟୟମାନ ।

ଧୀରେ ଧୀରେ ଶୁଖି ଆସିଲା ପ୍ରକୃତି ଆମ ପାଇଁ ସଂଚୟ କରି ମାଟି ତଳେ ରଖିଥିବା ଜଳଧାରା । ଏହି ପରିବର୍ତ୍ତିତ ପରିବେଶରେ ଅନେକ ପ୍ରାଣୀ, ଉଦ୍ଭିଦ ଲୋପ ପାଇଗଲେ ଆଉ ଧୀରେ ଧୀରେ ସମଗ୍ର ଗ୍ରହ ମରୁଭୂମି ତୁଲ୍ୟ ହେଲା । କ୍ରମେ ଧୂଳିସ୍ତର ଦ୍ୱାରା ଢାଙ୍କି ହୋଇଗଲା ଗ୍ରହର ଉପରି ଭାଗ, ଯାହାଦ୍ୱାରା ଠିକ୍ ପରିମାଣରେ ସୂର୍ଯ୍ୟାଲୋକ ଗ୍ରହ ପୃଷ୍ଠକୁ ଆସିପାରିଲା ନାହିଁ । ଏଇଠି ସେ ଦେଖିଲା କିଛି ହୃଦୟଥରା ଦୃଶ୍ୟ । କିଛି ଜୀବନ୍ତ



ପ୍ରାଣୀ କିପରି ଜୀବନ ବଞ୍ଚାଇବାକୁ ବ୍ୟାକୁଳ ହେଉଛନ୍ତି । ନାହିଁ ପାଣି ଟୋପାଏ, ବିଶୁଦ୍ଧ ପବନ ଆଉ ଜୀବନଦାୟୀ ସୂର୍ଯ୍ୟ କିରଣ ଆଖି ବୁଜି ପକାଇଲା ସତ୍ୟମ୍, ''ଆରେ ଆମ ପୃଥିବୀ ତ ଠିକ୍ ଏମିତି ଏକ ଅବସ୍ଥା ଆଡ଼କୁ ଗତି କରୁଛି ! ଆମ ପରିବେଶବିତ୍ ମାନେ ଏସବୁକୁ ଅନୁମାନ କରି ଏଥିରୁ ରକ୍ଷାପାଇଁ ଉପାୟ ଚିନ୍ତା କରୁଛନ୍ତି !

ଆମେ ବି ଦିନେ ଏମିତି ପାଣି ଟୋପାଏ, ଟିକିଏ ପବନ ପାଇଁ ବିକଳ ହୋଇପଡ଼ିବୁ, ଆଉ ଧୀରେ ଧୀରେ ବିଲୁପ୍ତ ହୋଇଯିବ ଆମ ସବୁଜ ସୁନ୍ଦର ପୃଥିବୀରୁ ଜୀବନର ସତ୍ତା । ଆମକୁ କିଛି କରିବାକୁ ହେବ... ହଁ...ହଁ... ହଁ.. ଆମକୁ କିଛି କରିବାକୁ ହେବ !'' ଚିତ୍କାର କରି ଉଠିଲା ସତ୍ୟମ୍ ।

-'ଆରେ କଣ ହେଲା ?' କହି ମା' ତାକୁ ହଲାଇଦେଲେ । ଆଖି ଖୋଲି ଚାହିଁଲା ସତ୍ୟମ୍ । ଛୋଟ ମହାକାଶଯାନରେ ନୁହେଁ, ସେ ତାଙ୍କ ଘରେ ଶୋଇଛି । ଖୋଲା ଝରକା ଦେଇ ଦେଖିଲା ରାତିର ବହଳ ଅନ୍ଧାର କଟି ସକାଳର ତୋଫା ଆଲୁଅ ଧୀରେ ଝଲସି ଆସୁଛି । ସ୍ୱପ୍ନ ହେଲେ ବି ଏତେ ସମୟ ଧରି ସେ ଯାହା ଦେଖୁଥିଲା, ତା' ତ ନିଚ୍ଛକ ସତ୍ୟ କଥା ! ଚନ୍ଦ୍ର ଓ ମଙ୍ଗଳରେ ବସତି ସ୍ଥାପନର ଯୋଜନା ନକରି ଆମେ ଆମ ପୃଥିବୀକୁ ସୁରକ୍ଷିତ କରିବା ପାଇଁ ଚେଷ୍ଟାକରିବା, ରକ୍ଷା କରିବା ଆମର ପାଣି, ପବନ ଆଉ ସୂର୍ଯ୍ୟକିରଣ । ଛୋଟ ପିଲାହେଲେ ବି ସେ ଆଜିଠାରୁ ଏଇ ଶପଥ ନେବା ସହ ତାର ସାଙ୍ଗମାନଙ୍କୁ ମଧ୍ୟ ଶିଖାଇବ ଆମ ମାଟିମା'କୁ ରକ୍ଷା କରିବାର ମନ୍ତ୍ର । ଲଗାଇବା ଗଛ, ସୃଷ୍ଟି କରିବା ଜଙ୍ଗଲ । କମାଇବା କଳକାରଖାନା ସ୍ଥାପନ ଆଉ ଯାନବାହାନର ଚଳାଚଳ । ତେବାଯାଇ ଆମେ ବଂଚିବା, ବଞ୍ଚିବ ଆମ ପୃଥିବୀ ।

ବାଗସାହି, ଜଗତ୍‌ସିଂହପୁର

# କିଏ ପାରିବ କହି

ଶ୍ରୀ ମାଧବାନନ୍ଦ ପଣ୍ଡା

ପୃଥିବୀ ଅଟଇ ଆମର ମାତା
ଦେଇଛି ଜନ୍ମ ଜୀବ, ତରୁଲତା
ଜାଣିଛ କେତେଗୋଟି ନାମ ତାର
ଚାରିଗୋଟି ଏକ ଏକ ଅକ୍ଷର – ୧
ଦୁଇ ଅକ୍ଷର ଅଟେ ନଅଗୋଟି– ୨
ତିନି ଅକ୍ଷର ହେବ ଆଠଗୋଟି–୩
ଚାରି ଗୋଟି ଚାରି ଚାରି ଅକ୍ଷର–୪
ରଖିବାକୁ ମନେ ଯତନ କର ।

କେତେ ଦିନେ ଆମ ମାତା ରତନ
ସୂର୍ଯ୍ୟ ଚତୁଃପାର୍ଶ୍ୱେ କରେ ଭ୍ରମଣ ?– ୫
ନିଜ ଅକ୍ଷେ ଘୂରେ କେତେ ସମୟେ
ତା ଫଳେ କିସ ସଂଘଟିତ ହୁଏ ?– ୬
କେତେ ଗୋଟି ଉପଗ୍ରହ ତାହାର
କେତେ ଦୂରେ ଉପସ୍ଥିତି ତାଙ୍କର ?–୭
କେଉଁ ମହାକାଶଚାରୀ ପ୍ରଥମେ
ପାଦ ଥାପିଲେ ଉପଗ୍ରହ ଭୂମେ– ୮
ସବୁଗୁଡ଼ିକର ଉତ୍ତର ଦେବ
ଧନ୍ୟବାଦଟିଏ ନିଶ୍ଚେ ପାଇବ ।

୩୩- ନୟନ ବିହାର, କସୋଟୀ, ପାଣ୍ଡିରୀ,
କେନ୍ଦ୍ରାପଡ଼ା- ୭୫୪୨୫୦

**

(ଉତ୍ତର ୪୧ ପୃଷ୍ଠାରେ)



# କରିବନି ବଡ଼େଇ

### ଶ୍ରୀ ଦେବାଶିଷ ଚକ୍ରବର୍ତ୍ତୀ

ମହୁମାଛିଟିଏ ଥିଲା ସାଙ୍ଗସାଥୀ ମେଳରେ
ବସା ବାନ୍ଧି ରହୁଥିଲା ଉଚ୍ଚ ଗଛ ଡାଳରେ ।
ଫୁଲେ ଫୁଲେ ଘୂରି ବୁଲି ଟିକି ଶୁଣ୍ଢେ ତାହାର
ମହୁମାଛି ବୁଲୁଥିଲା ଭୁଲି ନିଜ ଆହାର ॥

ସକାଳରୁ ସଞ୍ଜ ଯାଏ କାମେ ହୋଇ ମଗନ
ମହୁଫେଣା ଗଢୁଥିଲା କରି ଅତି ଯତନ
ସେହି ଗଛେ ରହୁଥିଲା ଗୋଟେ ପାଜି ବିରୁଡ଼ି
କଳି କରିବା ଅଟଇ ସ୍ୱାଭାବ ତ ତାହାରି ॥

ମହୁମାଛିକୁ ସଭିଏଁ କରୁଥିଲେ ଆଦର
ତାକୁ କିନ୍ତୁ କେହି କେବେ କରନ୍ତିନି କଦର ।
ମନେ ତାର ରହିଥିଲା ରାଗ, ଦ୍ୱେଷ, ଅହନ୍ତା
ମହୁମାଛି ପରଶଂସା କେତେ ଅବା ସହନ୍ତା ?

ଦିନେ ସେ ମହୁମାଛିକୁ କହିଲା ଧିକ୍କାରୀ
"ଫୁଲେଇ ହେଉଛୁ ତିଳେ ଲାଜ ନାହିଁ ତୋହରି ?
ମାସ ମାସ କାଳ ଲାଗି ସାଙ୍ଗସାଥୀ ମେଳରେ
ମୁଣା ପରି ଫେଣାଟିଏ ତିଆରୁଛୁ ସିନାରେ !



କହନି କେଉଁ ଅସାଧ କରିଛୁ ତୁ ସାଧନ
ତହିଁକି କରନ୍ତି ସବୁ ଗୁଣ ତୋର କୀର୍ତ୍ତନ ?"
ଏହା ଶୁଣି କହିଲା ସେ "ଶୁଣ୍ ଆରେ ବିରୁଡ଼ି
ତୁଚ୍ଛାଟାରେ ଦେଖାଉଛୁ କିଆଁ ମୁହଁ ଭୁରୁଡ଼ି ?

ଆହୁରି ଛୋଟିଆ ଏକ ଫେଣାଟିଏ ତିଆରି
ଜୀବନ କାଳରେ କରି ପାରିବୁ କି ତୋହରି ?
ଜଗତ ଜନ ତେବେ ତୋ ନାମକୁ ବି ଗୁଣିବେ
ଉପକାରୀ ଜୀବ ବୋଲି ସଭିଏଁ ବି ମଣିବେ ।"

ଏହି କଥା ଶୁଣି ଗଲା ବିରୁଡ଼ି ବି ଲାଜେଇ
କହିଲା, "ମୋତେ ତୁ ଭଲକଥା ଦେଲୁ ହେଜେଇ ।
ତୁଚ୍ଛା ବଡ଼େଇକୁ ମନ ଅଗଣାରୁ ତଳେଇ
ଭଲ କାମ କଲେ ନିଶ୍ଚେ ନେବେ ମୋତେ କୋଳେଇ ।''

ମଣ୍ଡୁଆ, କେନ୍ଦୁଝରଗଡ଼- ୭୫୮୦୧୪

---

**'ସାଧାରଣଜ୍ଞାନ ପରୀକ୍ଷା'ର ଉତ୍ତର–** ୧) ସାର୍ ଫିରୋଜଶାହା ମେହେଟ୍ଟା, ୨) ପ୍ରଖ୍ୟାତ କଣ୍ଠଶିଳ୍ପୀ ଆଶା ଭୋଁସଲେ, ୩) ଆସାମ, ୪) ମଇ ୨୧ ତାରିଖ, ୫) ୧୯୪୯ ମସିହା ଜାନୁଆରୀ ୧ ତାରିଖ, ୬) ଲିଓନାର୍ଦୋ ଦା ଭିନ୍‌ସି, ୭) ଦିଲିପ ତିର୍କି, ୮) Universal Identification Authority of India., ୯) ୫୫୨, ୧୦) ହିମାଚଳ ପ୍ରଦେଶ

# ବଦ୍ ଖର୍ଚ୍ଚୀ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ଥିଲେ ତିନ୍‌ଟା ଭାଏ ଆମର ଗାଁଥି । ଟଁକା ଗୁଡ଼ାଦୁ ଲେଖାନ୍ ଦେଇକରି ଦିନେ ତାକର୍ ମାଁ କହେଲେ, "ଯ' ରେ ପୁତେ ବଜାର୍ ବୁଲିକରି ଆଏବ । ଯାହାର୍ ମନ୍‌କେ ଯେନ୍‌ଟା ପାଏବା, ଇ ପଏସାଥି ଘିନାବିକା ବି କର୍‌ବ । ହଁ, ଯହବେଲ୍ ତକ୍ ନାଇଁ ରହେବ । ବେଲ୍ ଥାଉନ୍ ଥାଉନ୍ ଫିରିଆଏବ । ବୁଝ୍‌ଲ ?" ତାକ୍‌ର ମାଁର୍ ଠାନୁ ପଏସା ଛିନ୍‌ଲେ କି ଉଷତ୍ ମନେ ବଜାର୍‌କେ ଧାଏଁଲେ ତିନ୍‌ହେ କେ ତିନ୍‌ହେ ।

କିନ୍ଦ୍ରି କିନ୍ଦ୍ରି ବଜାର୍ ବୁଲ୍‌ଲେ । ଚିନ୍‌ହାଁର୍ ଜନାର୍ କେତେ ଲୁକ୍‌କୁ ଭେଟ୍‌ଲେ । ବୁଲି ବୁଲି ମାଏନ୍ ମାଏନ୍‌ସା ଦରବ୍ ଦେଖ୍‌ଲେ । ଯାହାର୍ ମନ୍‌କେ ଯେନ୍‌ଟା ପାଏଲା ହାଟ୍‌ବାଟ୍ ବି କଲେ । ଆରୁ ମାଁର୍ କଥା ସୋର୍ ପଡ୍‌ଲା କି ଘର୍‌ମୁହାଁ ଗାଏ ବଲଦ୍ ଧାଏଁଲା ଲେଖନ୍ ଫିରି ଆଏଲେ ଭଡ଼ୋ ଭଡ଼ୋ ।

"ଆଏଲରେ ପୁତେ । ବନେକଲ । କିଏ କାଣା ଘିନିଛ ଦେଖୁଁ ତ ?" କେତେ ଗହଗହ ହେଇ କହେଲେ ମାଁ । ଉଷତ୍ ହେଇକରି ବଡ୍‌ଖା ପିଲା ଗଦେଇନେଲା ସେ ଘିନିଥିଲା ମିଠାସିଠା ଦୁରାକ । ତାର୍ ବାସ୍‌ନାଥି ମହ ମହ ମହକିଗଲା ଘର୍ । ଛଳକେ ସବ୍‌କର୍ ତୁଡ଼ୁଁ ପନଚେଇ ଗଲା । ଲାହା ଥିପି ପଡୁଥିଲା । "ଇଟା ଆମେ ସଭେ ଖାଏମା ବଲିକରି ଆନିଛେ ଗୋ ମାଁ ।" ମିଠାସିଠା ନୁହେ ତ ରାଏଜ୍‌ଟେ ଘିନି ଆନ୍‌ଲା ଲେଖେନ୍ ହଉଥିଲା ବଡ୍‌ଖା ପିଲା ।

"ବନେ କଲୁରେ ପୁତା । ବହୁତ୍ ବଢ଼ିଆଁ କଲୁ । ମୋର ବଡ୍‌ଖା ପୁଓ ପରେ, ସବ୍‌କର୍ ମନର୍ କଥା ବୁଝି ପାର୍‌ବାର୍ ଲୋକ୍ । ଖାଏଲେ ସିନା ପେଟ୍ ପୂର୍‌ବା । ଭୋକ୍ ମେଟ୍‌ବା ଆରୁ ଘର୍‌କେ ବି ଅଁଟ୍‌ବା ।" ବଡ଼େଟେ ଉଷତ୍ ହେଇକରି କହେଲେ ମାଁ । ଫେର୍ ତାକର୍ ସୁରୁପିଲାକେ ଦେଖିକରି ପଚ୍‌ରାଲେ, "ତୁଇ କାଣା ଆଣିଛୁ ବେଟା ?" ସାନ୍‌ପୁଓ ଗଦେଇନେଲା ମାଁର ଆଗ୍‌ଆଡ଼େ ତାର୍ ଘିନି ଆନ୍‌ଲା ଛିଡ଼ାପଟା ଗୁଡ଼ାଦୁକ । ମାଁବୁଆ, ଦଦାଦାଦି ସବ୍‌କର୍ ଲାଗି ହାତେଭିତେ ଘିନିଥିଲା ସେ । "ଆମେ ସଭେ ଇଟା ପିନ୍ଧମା ଗୋ ମାଁ! ଦେଖ ତ କେଡ଼େ ଅଏନ୍ ଅଏନ୍ କପଡ଼ାଲତା ଯେ ? ସସ୍ତାଥି ପାଏଲିଁ ତ । ଘିନି ଆନିଛେଁ ବାଛିନିଛି କରି ।" ଆତ୍ମ ସନ୍ତୋଷଥି ଫାଟିପଡୁଥିଲା ସେ ।

"ମୋର୍ କୋଡ୍‌ପୁଛା ପିଲା ପିଲା ପରେରେ । ଦେଖ ତ କେତେ ବୁଦ୍ଧି ହେଲାନ୍ ମୋର ପୁଓର୍ ! କାହାର୍ କାଣା ଦର୍‌କାର୍ ସବୁ ଜାନିଛେ । ଲାଏଜ୍ ମହତ୍ ଢାପ୍‌ବାର୍ ଲାଗି ନିହାତି ଦରକାର୍, ଇ କପ୍‌ଡ଼ାଲତା । ଠିକ୍ ଠିକ୍, ବନେ ବନେ, ସାବାସ୍‌ରେ ମୋର ବେଟା । ମୋର ଛେଦ୍‌ଲି ପୁଓକେ ଲାଖେ ବରଷ୍ ବଁଚେଇ ରଖୁ ମା



ସମଲେଇ ।” ଶେଷକେ ମଝିଆଁ ପିଲାକେ ପଚ୍‌ରାଲେ, “ତୁଇ କାଣା ଆନିଛୁ ବାବୁ ? ନାଇଁ ଦେଖେଇ କରି ଏନ୍‌ତା ଖୁଁଟ୍ ଲେଖେନ୍ ଠିଆ ହେଇଛୁ ଯେ ?”

ମାଁର୍ ଆଗଆଡ଼େ ଦେଖୁନ୍ ଦେଖୁନ୍ ଗଦେଇନେଲା ସେ ଘିନି ଆନିଥିଲା ବହିପତର ଦୁରା । ହେଟା ଦେଖ୍‌ଲେ କି ରାଗେ ଜଲିଗଲେ ମାଁ– “ଇଟା କାଏଁ କାମେ ଲାଗ୍‌ବା ?” ମାଁ ପଚ୍‌ରାଲେ, “କାହାର୍ ପେଟ୍ ଭର୍‌ବା କି କାହାର୍ ଇଜ୍‌ଜତ୍ ଢାପ୍‌ବା ଇ ବହିଦୁରାକ, କହ ତ ? ନାଲାଏକ୍ କାହିଁକା ? ଇ ପଏସା ଦୁରାକକେ ବଦ୍‌ଖର୍ଚ୍ଚ କରିନେଲୁ ତୁଇ । ତୋର୍ ଇ ବହିପତର୍‌କେ ରଖ୍‌ବାର୍ ଲାଗି ଆମର୍ ଘରେ ଜାଗା କାଇଁଛେ ? ମୂଷାଢୁଷା କାଟିନେଲେ ଗଲା । ପଏସା ଦୁରାକ୍ ପାନି ପଡ଼ିଗଲା କାଏଁନ୍ ? ତୋର୍ ପେଟ୍‌କେ ହେଲେ ଖାଇଥିତୁ ।”

ତାକର୍ ମାଁ ଟିକେ କମ୍ ପାଠ ପଢ଼ିଥିଲେ । ପିଲାକୁ ପାଠ୍‌ସାଠ୍ ପଢ଼ାଇଥିଲେ ବି ପଢ଼ାବହିକେ ଛାଡ଼କରି ଦୁସ୍‌ରା ବହିର୍ କାମ୍ କାଣା ନାଇଁ ଜାନିଥାଇ ତାଏଲ୍ ।” ଇ ମୋର ବଡ୍‌ଖା ଦଦା ଆନ୍‌ଲା ମିଠାସିଠା ଦୁରାକ ଦିନେକର ଲାଗି ପେଟ୍‌ପୂରାକେ ଭର୍‌ବା ଗୋ ମାଁ । ଆରୁ ମୋର୍ ସୁରୁଭାଏ ଆନ୍‌ଲା କପଡାଲତା ? କପାସିଆ, ଛ'ମାସିଆ । ଛ'ମାସ୍ କି ବର୍‌ଷେ ଭାଏଲ୍ ଯିବା । ହେଲେ ଇ ମୋର୍ ବହିତକ ଯୁଗ୍ ଯୁଗ୍ ଧରି ରହେବା ।”

ଟିକେ ଥମ୍‌ଥମେଇ କରି କହେଲା ମଝିଆଁ ପିଲା, “ବହି ଘିନ୍‌ବାର୍‌ଟା ବଦ୍‌ଖର୍ଚ୍ଚା ନୁହେଁସେ ଗୋ ମାଁ । ଇ ବହିକେ ଆମେ ସଭେ ପଢ଼୍‌ମା । ଥୁଇ ସଁଗେଇ ଜାନ୍‌ଲେ ଆମର୍ ପୁଓନାତି, ସୁତିପୁତି ସଭେ ପଢ଼୍‌ବେ ଇ ବହି । ଜ୍ଞାନର୍ ଭଣ୍ଡାର୍ ଆଏ ବହି । ମାଁ ଗୋ, ତୁମର୍ ଲେଖେନ୍ ଅମୂଲମୂଲ ଆଏ ବହି । ଘରେ ରହିଥିବାର୍ ତକ୍ ସବ୍‌କୁ ଜ୍ଞାନ ବାଁଟୁଥିବା ଇ ବହି । ଜୀବନ୍ ଜିଁବାର ବାଟ୍ ଦେଖଉଥିବା ।”

ଭାରତୀ କୁଟୀର, ଡୁଙ୍ଗୁରିପାଲି- ୭୬୭୦୨୩, ସୁବର୍ଣ୍ଣପୁର

## ଅଛି-ନାହିଁ

ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୫ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ ! *(ଉତ୍ତର ୪୪ ପୃଷ୍ଠାରେ)*



# ଗାଈ ଚରେଇବା ଛାଡ଼ି କଲମ ଧର

## ଇଂ ପ୍ରେମାନନ୍ଦ ନାୟକ

ଚାରିମାସ ଏଣେତେଣେ ବୁଲିଲା ଗୌତମ । ବାପା, ବୋଉଙ୍କୁ ପାଇଲାନି । ଭୋ ଭୋ ହୋଇ କାନ୍ଦିଲା । ଆଉ କେଉଁଠି ଖୋଜିବ !! ସେ ମନେ ମନେ ବାପାବୋଉଙ୍କ ଉପରେ ରାଗିଗଲା । ବାପା-ବୋଉ ହେଉ ସେମାନେ ଯଦି ମତେ ଖୋଜିଲେ, ମୁଁ ଭୋକଉପାସରେ ବୁଲିବୁଲି ତାଙ୍କୁ କାହିଁକି ଖୋଜିବି ! ତାଙ୍କ ପାଇଁ ମୁଁ ଅଲୋଡ଼ା ହୋଇଯାଇଛି ।

କ୍ଷୀର ବିକି ଘରକୁ ଫେରୁଥିଲେ ଧଡ୍ୟାଦି । ପିଲାଟିକୁ ଦେଖି ପଚାରିଲେ- କିରେ ବାପା, କାନ୍ଦୁଚୁ କାହିଁକି ? ତୋ ଘର କେଉଁଠି ? ତୋ ନାଁ, ବାପାଙ୍କ ନାଁ କ'ଣ ? ପିଲାଟିଠାରୁ ସବୁକଥା ଶୁଣି ଧଡ୍ୟାଦି କହିଲେ– ମୋ' ସାଙ୍ଗରେ ଆମ ଘରକୁ ଚାଲ । ତିନିଓଳି ପେଟପୂରା ଖାଇବୁ । ତୋ'କାମ ହେଲା, ଗାଇପଲଙ୍କୁ ପଡ଼ିଆକୁ ଚରେଇବାକୁ ନବୁ । ପାରିବୁ ? ପିଲାଟି ମୁଣ୍ଡ ଟୁଙ୍ଗାରି 'ହଁ' କହିଲା ।

ପିଲାଟିର ନାଁ ଗୌତମ । ଭଲ ସୁସୁରି ବଜାଏ । ଏଇ ବର୍ଷ ମକର ମେଳାରୁ ଧଡ଼୍ୟାଦି ଗୋଟେ ବଇଁଶୀ କିଣି ଗୌତମକୁ ଦେଇଛନ୍ତି । କାହାଠାରୁ ନଶିଖି ମାସକ ଭିତରେ ଭଲ ବଇଁଶୀ ବଜଉଚି ଗୌତମ, ପୁଣି ନାକରେ । ପଡିଆ ମଝିରେ ଥିବା ବରଗଛ ମୂଳେ ସେ ବସେ । ପଡ଼ିଆରେ ଚରନ୍ତି ଗାଇପଲ । ସେ ବଇଁଶୀ ବଜେଇଲେ ଗାଈ ପଲ କାନଡେରି ଶୁଣନ୍ତି । ଜମା ଯା' ତା' ବିଲକୁ ଯାଇ ଫସଲ ଖାଆନ୍ତିନି । ମାଟି ଉପରେ ଶୋଇପଡ଼ିଥିବା ଫସଲ ଗଛଗୁଡ଼ା ଅଣ୍ଟା ସଳଖ କରି ଠିଆ ହଉଛନ୍ତି ବଇଁଶୀ ସୁର ଶୁଣିବାକୁ । ଚାଲିଗଲା ଲୋକ ଘଡ଼ିଏ ତା' ଆଡ଼କୁ ଚାହିଁ କହୁଛନ୍ତି- ଏଡ଼େ ଟିକେ ପିଲା । କେତେ ମିଠାସୁରରେ ବଇଁଶୀ ବଜଉଛି !! ବଡ଼ହେଲେ ଓସ୍ତାଦ୍‌ଟିଏ ହେବ । ଦେଶର ନାଁ ରଖିବ । ବଇଁଶୀ ବଜେଇବା ପାଠ ଅଛି । ସେ ପାଠ ପଢ଼ିଲେ ସିନା ଓସ୍ତାଦ୍‌ଗିରି କରିବ ।

ସ୍କୁଲ ଛୁଟି ହେଲେ, ଚାନୁ ତା' ମାମୁଘରକୁ ଯାଏ । ଛୁଟିଭିତରେ ଅଜାଙ୍କ ଶ୍ରାଦ୍ଧ ପଡ଼େ । ଚାନୁର ଅତିପ୍ରିୟ ଘିଅ ଛୁଙ୍କଦିଆ ଖେଚୁଡ଼ି ।ସେଥିପାଇଁ ସେ ବେଳେବେଳେ ମା'ଙ୍କୁ ପଚାରେ- ଆଜାଙ୍କ ଶ୍ରାଦ୍ଧ ଏବର୍ଷ ଛୁଟି ଭିତରେ ପଡୁଛି ନା ନାହିଁ ?

ସ୍କୁଲ ଛୁଟି ହେଲା । ବାପା, ମାଙ୍କ ସାଙ୍ଗରେ ଚାନୁ ମାମୁଘରକୁ ବାହାରିଲା । ଏଇ ତ ମାମୁଘର ନଡ଼ିଆ ଗଛ ଦିଶିଲାଣି । ହଠାତ୍ ତାଙ୍କ କାର ଅଟକିଲା । ମା' ପଚାରିଲେ– ଗାଡ଼ି କାହିଁକି ରଖିଲ ? ବାପା କହିଲେ – ମୁଁ ବ୍ରେକ୍ ମାରିନି, ଗାଡ଼ି ଆପେ ଆପେ ଅଟକିଲା । ତମେ କିଛି ଶୁଣିପାରୁଛ ନା ନାହିଁ ? ଡାହାଣ ପଟକୁ ଚାହଁ, ଗଛମୂଳେ ବସି ଛୋଟ ପିଲାଟିଏ କେତେ ମିଠା ସୁରରେ ବଇଁଶୀ ବଜଉଛି । ମା' କହିଲେ– ଦେଖିରେ ଚାନୁ ଦେଖ୍ ! ତୋରି ବୟସର ପିଲାଟା । ବାଃ, ବଇଁଶୀ ସୁର କାନରେ ବାଜିଲେ ମନମିଞ୍ଜାସ୍ ପୂରା ଥଣ୍ଡା ହୋଇଯାଉଛି । ଗାଇ ଜଗୁଚି । କାହାଠାରୁ ଶିଖି ନ ଥିବ । ଭଲ ଗୁରୁଙ୍କ ଠାରୁ ଶିଖିଲେ ଆହୁରି ଭଲ ବଜେଇବ ।

ଚାନୁ କହିଲା- ବାପା, ତମେତ ମତେ ଅନେକଥର କହିଛ, ସବୁ ଗଛର କିଛିନା କିଛି ଔଷଧୀୟ ଗୁଣ ଅଛି ।

ଯୋଉ ଗଛ ବିଷୟରେ ଆମେ କିଛି ଜାଣୁନା, ତାକୁ ଅନାବନା ଗଛ କହୁ । ଓପାଡ଼ି ଫିଙ୍ଗିଦଉ । ବାପା, ସେ ପିଲାଟା ତ ଅନାବନା ଗଛ ନୁହଁ ? ବାପା ଚାନୁର ପିଠି ଥାପୁଡ଼ାଇ କହିଲେ- ତୋ କଥା ମୁଁ ବୁଝିପାରୁଛି । ତୁ ଆଗ ତା' ସାଙ୍ଗରେ କଥା ହ ।

ଗୌତମ ଚାନୁ ମୁହଁକୁ ଚାହିଁ କହିଲା- ମୁଁ କାହାଠୁ ବଇଁଶୀ ବଜେଇବା ଶିଖିନି । ବଜଉ ବଜଉ ବଜେଇଲି । ପାଠପଢ଼ା କଥା ପଚାରିଲା ଚାନୁ । ''ସିଲଟ, ଖଡ଼ି ଦେଖିବାକୁ କେମିତିକା, ଦେଖିନି । ସବୁବେଳେ ଗଣ୍ଡାଏ ଖାଇବା ଚିନ୍ତା । ପାଠ ପଢ଼ିଥାନ୍ତି କେମିତି ? କିଏ ମତେ ପଢ଼େଇଥାନ୍ତା ?'' ଗୌତମ କହିଲା । ଚାନୁ କହିଲା– ସବୁ ବଡ଼ ମଣିଷଙ୍କର ପିଲାଦିନ ଦୁଃଖରେ କଟିଛି । କିଛି ଭଲକାମ କରିବାର ଇଚ୍ଛା ତୋ ମୁଣ୍ଡରେ ପଶିଗଲେ କାମଟା ସହଜ ହେଇଯାଏ । ଟଙ୍କାପଇସା ଇଚ୍ଛାଶକ୍ତିର ବାଟ ଓଗାଳି ପାରେନି । ଶୁଣ ବଇଁଶୀ ବଜେଇବାର ପାଠ ଅଛି । ସେହି ପାଠକୁ ତୁ ଆୟତ୍ତ କରିପାରିଲେ ଆହୁରି ମିଠା ସୁରରେ ବଇଁଶୀ ବଜେଇପାରିବୁ । ତୁ ତ ଗୋଟେ ମଲା ଗଛ । ତୋ ଫୁଲ ବଣରେ ଫୁଟିଲେ କିଏ ତା' ବାସନା ପାଇବ ? ଯେଉଁ ଫୁଲର ବାସନା ମଣିଷ ନାକରେ ନ ବାଜିଲା, ସେମିତି ଫୁଲ ଫୁଟି ଲାଭ କ'ଣ ? ମୋ କଥା ମାନ । ଗାଈ ଚରେଇବା ଛାଡ଼ି କଲମ ଧର । ବଇଁଶୀ ବଜେଇବା ପାଠ ପଢ଼ । ତୋର ବଇଁଶୀ ସୁର ଶୁଣି, ସମସ୍ତେ କୁହନ୍ତୁ, ବାଃ... ବାଃ...ବାଃ... ।

ଗୌତମ କହିଲା– ଖଣ୍ଡିଏ ପୋଷାକକୁ ଶୁଖେଇ ପିନ୍ଧୁଛି । ଗାଈ ଚରେଇଲେ ଗଣ୍ଡେ ଖାଇବାକୁ ମିଳୁଛି । ଗାଈ ଚରେଇବା ଛାଡ଼ିଲେ ଖାଇବି କୋଉଠି ? ପାଠପଢ଼ିବାକୁ ପଇସାପତ୍ର କିଏ ଦବ ? ବୁଝିଲ ଛୁଆବାବୁ, ପେଟରେ ଭୋକଥିଲେ ସବୁ ଇଚ୍ଛା ଆପେ ଆପେ ମରିଯାଏ– ଏକଥା ଧଡ଼୍ୟାଦି କହୁଥିଲେ । ମୁଁ ଏଇଠି ଅଛି ଠିକ୍ ଅଛି । ଏମିତି ବଇଁଶୀ ବଜଉଛି, ଭାରି ଭଲଲାଗୁଛି । ଗାଈଗୋରୁ, ଗଛବୃଚ୍ଛ ମୋ ବଇଁଶୀ ସୁରରେ ବାନ୍ଧି ହେଇଯାଇଛନ୍ତି । ବାମନ ହେଇ ଚାନ୍ଦକୁ ହାତ ବଢ଼େଇବି କାହିଁକି ? ବେକାର ସ୍ୱପ୍ନକୁ ମୁଣ୍ଡରେ ପୂରେଇ ହନ୍ତସନ୍ତ ହେବି କାହିଁକି ?

ଚାନୁ ଫେରିଆସି ବାପାଙ୍କୁ ସବୁକଥା କହିଲା । ବାପା କହିଲେ- ତାକୁ ଆଉଥରେ ବୁଝା । ଆମେ ଯିବାଦିନ ତାକୁ ସାଙ୍ଗରେ ନେଇଯିବା ।

ଏବେ ଗୌତମ ଚାନୁ ପିଛା ଛାଡୁନି । ପଢ଼େଇ ଦିଅ, ପଢ଼େଇଦିଅ କହି ତା' ପଛେ ପଛେ ଗୋଡ଼ଉଛି । ଥରେ ଚାନୁ ଗୌତମକୁ କହିଲା – ତୁ ମନେ ମନେ ଜିଦ୍ କର, କେମିତି ଭଲ ବଇଁଶୀ ବଜେଇବୁ । ବୁଝିଲୁ,

# ପୂଜା ଆସିଲା

ଶ୍ରୀ କନ୍ଦର୍ପ ବେହେରା

ବରଷକ ପରେ ଆସିଲାରେ
ପୂଜା ଆସିଲା,
ମାମା, ଅଂଶୁ ମନ ଆନନ୍ଦ
ଢେଉରେ ଭାସିଲା ।
ଆକାଶେ ବଉଦ ଭେଳା ଭେଳା
ହୋଇ ଦିଶିଲା,
ଟପର ଟପର ଆକାଶୁ
କାକର ଖସିଲା ।
କାଶତଣ୍ଡୀ ଫୁଲ ସବୁଜ
ବହଳ ଶୋଭାରେ,
ସାଜିଅଛି ଅବା ଏଇ
ନଈପଠା ଗଭାରେ ।
ଦିଶୁଛି ସୁନ୍ଦର ବିଲ, ବଣ
ଆଉ ପଡ଼ିଆ,
ଦଶ'ରା ମେଢ଼ ତ ଦେଖିବାକୁ
କେତେ ବଢ଼ିଆ ।
ଘରେ ଘରେ କେତେ ଭାସୁଅଛି
ପିଠାପଣାରେ,
ଆମ ମାମା, ଅଂଶୁ ଖାଆନ୍ତି
ହରଷ ମନରେ ।
ମଜା ତ କରନ୍ତି ପିଲାଏ
ଦଶ'ରା ବଜାରେ,
ବୁଲନ୍ତି ସଭିଏଁ କେତେ ସାଙ୍ଗ
ସାଥୀ ପୂଜାରେ ।

କବି କୁଟୀର, ସା/ପୋ-ଡଇଁଚା, ଭା-ରେଢ଼ାଖୋଲ, ଜି-ସମ୍ବଲପୁର-୭୬୮୧୦୬

---

ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ହେଲେ ବହୁତ କଷ୍ଟ ସହିବାକୁ ପଡ଼ିବ । ଯିଏ ଦୁଃଖକୁ ବେଖାତିର କରି ଲକ୍ଷ୍ୟ ଆଡ଼କୁ ପାଦ ପକାଏ, ସିଏ ସହଜରେ ଲକ୍ଷ୍ୟସ୍ଥଳରେ ପହଞ୍ଚିଯାଏ । ତୁ ପାରିବୁ ନା ଗୌତମ ?

ଆଜିକାଲି ଗୌତମ ଟି.ଭି.ରେ ବଇଁଶୀ ବଜେଇବାର ଦେଖିଲେ ତାନୁ ଆଖି ଲୁହ ଛଳ ଛଳ ହେଇଯାଏ । ମନକୁ ମନ ସେ କହେ, ''ଗୌତମ, ତୁ ପ୍ରକୃତରେ ହୀରା ମୁଣ୍ଡାଟାଏ । ଜାଣିଛୁନା, ତୋତେ ଟି.ଭି. ପରଦାରେ ଦେଖିଲେ, ବାପା, ବୋଉ କହୁଛନ୍ତି, ଗୌତମ ଭଳି ପୁଅ ଯାହାର ଥିବ, ତା'ର ଆଉ ଦୁଃଖ କ'ଣ !!!

ମାତୃ ନିଳୟ, ସାଲେପୁର, କଟକ-୭୫୪୨୦୨

**'କିଏ ପାରିବ କହି' ର ଉତ୍ତର–**

୧– ଭୂ, ଜ୍ୟା, କୁ, କ୍ଷ୍ମା । ୨– ଭୂମି, ରସା, ଧରା, ସ୍ଥିରା, କ୍ଷୌଣୀ, ଉର୍ବୀ, ପୃଥ୍ୱୀ, ମହୀ, ଗୋତ୍ରା ।
୩– ଅଚଳା, ଅନନ୍ତା, ଧରିତ୍ରୀ, ଧରଣୀ, ବସୁଧା, ଅବନୀ, ମେଦିନୀ, କାଶ୍ୟପୀ ।
୪– ସର୍ବଂସହା, ବସୁମତୀ, ବସୁନ୍ଧରା, ବିଶ୍ୱମ୍ଭରା ।
୫– ୩୬୫ ଦିନ । ୬– ୨୪ ଘଣ୍ଟାରେ ଥରେ, ଯାହା ଫଳରେ ଦିନରାତି ହୁଏ ।
୭– ଗୋଟିଏ (ଚନ୍ଦ୍ର) ପ୍ରାୟ ତିନି ଲକ୍ଷ କି.ମି. ଦୂରରେ ।
୮– ନିଲ୍ ଆର୍ମଷ୍ଟ୍ରଙ୍ଗ୍




ପଣ୍ଡିତ ଶ୍ରୀ ନାରାୟଣ ଶତପଥୀ

ପୂର୍ବକାଳରେ ସୃଷ୍ଟିକର୍ତ୍ତା ବ୍ରହ୍ମାଦେବ ଆକାଶ, ସୂର୍ଯ୍ୟ, ମେଘ, ପବନ ଓ ଧରଣୀ ମାତାଙ୍କୁ ଡାକି ନିଜ ନିଜର ବର ପ୍ରାର୍ଥନା କରିବାକୁ କହିଲେ । ତା' ଶୁଣି ପ୍ରଥମେ ଆକାଶ କହିଲା, "ହେ ପିତାମହ ! ମୋର ସ୍ଥାନ ସର୍ବ ଉପରେ ରହୁ ।" ତା'ପରେ ସୂର୍ଯ୍ୟଦେବ କହିଲେ, "ଆକାଶ ନ୍ୟୁନତମ ଭାବେ ରହୁ । ମୁଁ ତା'ଦେହରେ ବିଚରଣ କରେ ।" ମେଘ କହିଲା– "ହେ ପ୍ରଭୁ ! ମୁଁ ସବୁବେଳେ ସୂର୍ଯ୍ୟଙ୍କୁ ଘୋଡ଼ାଇ ରଖେ ।'' ଏ ସମସ୍ତ ଶୁଣି ପବନ ଦେବତା କହିଲେ, "ହେ ପ୍ରଭୁ ! ସମସ୍ତଙ୍କଠାରୁ ମେଘ ବଳବାନ ଦେଖାଇହେଉଛି, ଏଣୁ ମୋତେ ଏପରି ଶକ୍ତି ଦିଅନ୍ତୁ କି ମୋ ବଳରେ ମେଘକୁ ଉଡ଼ାଇନିଏ ।'' ବ୍ରହ୍ମଦେବ ସମସ୍ତଙ୍କର କାମନା ପୂରଣ କଲେ ଓ 'ତଥାସ୍ତୁ' ବୋଲି କହିଲେ ।

କିନ୍ତୁ ଭୂଦେବୀ ମୌନ ରହିଥିବା ଦେଖି ବ୍ରହ୍ମା କହିଲେ, "ହେ ଭୂଦେବୀ ! ତୁମର ଅଭିଳାଷ କ'ଣ କହୁନାହଁ ?" ତହୁଁ ଭୂଦେବୀ କହିଲେ, "ହେ ପ୍ରଭୁ ! ମୋର ସେପରି କିଛି କାମନା ନାହିଁ । ଆପଣଙ୍କୁ ଯାହା ଭଲ ଲାଗୁଛି, ତାହା ଦାନ କରନ୍ତୁ ।" ତାହା ଶୁଣି ବ୍ରହ୍ମଦେବ କହିଲେ, "ହେ ଦେବୀ ! ତୁମ ଉପରେ ମୋର ସୃଷ୍ଟି ଜୀବଜଗତ ଜନ୍ମ ନେଇଛନ୍ତି । ଏହି ଜୀବମାନେ ତୁମ ଉପରେ ପାଦ ଦେଇ ଚାଲିବେ ଓ କଷ୍ଟ ଦେବେ । ତୁମେ ଏ ସବୁ ସହିପାରିବ ତ ?" ତହୁଁ ଭୂଦେବୀ କହିଲେ, "ମୁଁ ସବୁ ସହିପାରିବି । କାରଣ ସମସ୍ତ ଜୀବଜଗତ ମୋର ସନ୍ତାନ । ମାତୃତ୍ୱ ରକ୍ଷା କରି ମୁଁ ସମସ୍ତଙ୍କର ପୀଡ଼ା ସହିବା ପାଇଁ ବାଧ୍ୟ ।"

ଏପରି ଶୁଣି ଆକାଶ ଭୂଦେବୀଙ୍କ ଉପରେ ଛତା ରୂପରେ ଅବସ୍ଥାନ କଲେ । ସୂର୍ଯ୍ୟ ଆଲୋକ ପ୍ରଦାନ କଲେ । ମେଘ ଯଥାସମୟରେ ଜଳ ପ୍ରଦାନ କଲେ ଏବଂ ପବନ ଦାନ କଲେ । ଏହିପରି ଧରଣୀ ମାତା ସର୍ବଂସହା ଭାବରେ ସମସ୍ତଙ୍କର ପ୍ରୀତିଭାଜନ ହୋଇ ରହିଲେ । ସମସ୍ତ ଜୀବଜନ୍ତୁ ବୃକ୍ଷଲତାଙ୍କୁ ମାଆ ରୂପେ ପାଳନ କଲେ ।

ସୁକିନ୍ଦା, ଯାଜପୁର



---

**ସାହିତ୍ୟଜ୍ଞାନ ପରୀକ୍ଷାର ଉତ୍ତର –** ୧) ଶ୍ରୀରାମଚନ୍ଦ୍ର ଭବନ (କଟକ), ୨) 'ଡଗର', ୩) ଡକ୍ଟର କୁଞ୍ଜବିହାରୀ ଦାଶ, ୪) ଉଭୟଙ୍କ କଥା ଠିକ୍, ୫) ଜିଜ୍ଞାସୁ; ଅଭୂତପୂର୍ବ, ୬) ଧୃ ଧାତୁରେ ତବ୍ୟ ପ୍ରତ୍ୟୟ, ୭) କଂସାରି ଘରର ପାରା, ୮) ଏ ପଚା ଆମ୍ବ କେହି କିଣିବେ ନାହିଁ, ୯) 'ସେ ଫେଲ୍ ହେବା', ୧୦) ସମ୍ରାଜ୍ୟ ବା ସଂରାଜ୍ଞୀ; ଅବରୋହଣ ।



# ଯୋଗ୍ୟପୁତ୍ର

ଶ୍ରୀ ଅକ୍ଷୟ କୁମାର ଦାଶ

ନଈରୁ ପାଣି ଆଣିବାକୁ ତିନିଜଣ ସ୍ତ୍ରୀଲୋକ ଯାଉଥିଲେ । ସେମାନେ ନିଜ ନିଜ ଭିତରେ ନିଜ ପୁଅମାନଙ୍କର ଗୁଣ କହୁଥିଲେ । ପ୍ରଥମ ସ୍ତ୍ରୀଲୋକଟି କହିଲା, "ମୋ ପୁଅ ଜଣେ ବିଖ୍ୟାତ ପଣ୍ଡିତ ।" ଦ୍ୱିତୀୟ ସ୍ତ୍ରୀଲୋକଟି କହିଲା, " ମୋର ପୁଅ ଜଣାଶୁଣା ପହିଲିମାନ୍ ।" ତୃତୀୟ ସ୍ତ୍ରୀ ଲୋକଟି ଚୁପ୍ ରହିବାର ଦେଖି ଅନ୍ୟ ଦୁଇଜଣ ତା' ପୁଅ ବିଷୟରେ ପଚାରିଲେ । ସେ କହିଲା, "ଭଉଣୀ ! ସେ କୌଣସି ଜଣାଶୁଣା ବ୍ୟକ୍ତି ନୁହେଁ । କିନ୍ତୁ ମୋ ଦୃଷ୍ଟିରେ ସେ ମୋର ପ୍ରିୟପୁତ୍ର ।

ସବୁ ସ୍ତ୍ରୀଲୋକ ନଦୀରୁ ପାଣି ମାଠିଆ ଧରି ଘରକୁ ଫେରିଲେ । ବାଟରେ ପ୍ରଥମ ସ୍ତ୍ରୀ ଲୋକର ପୁଅ ଭେଟ ହେଲା । ସେ ତା' ମାଆକୁ ଦେଖି କହିଲା, "ବହୁତ ଭଲ କଲ ମା', ମୁଁ ବାହାରକୁ ଗଲାବେଳେ ତୁମେ ପାଣିପୂର୍ଣ୍ଣ କୁମ୍ଭ ଦେଖାଇଦେଲ । ମୋ ପାଇଁ ଏହା ବହୁତ ଶୁଭ ଲକ୍ଷଣ । ଆଜି ଦନଟିରେ ମୁଁ ବହୁତ ଲାଭବାନ୍ ହେବି ।"

କିଛି ଦୂର ଚାଲିବା ପରେ ଦ୍ୱିତୀୟ ସ୍ତ୍ରୀଲୋକଟିର ପୁଅ ଭେଟ ହେଲା । ପୁଅଟି ତା'ର ମା'କୁ ଦେଖି କହିଲା, "ମା' କୁସ୍ତି କରି ମୁଁ ଫେରୁଛି । ଭାରି ଭୋକ ଲାଗୁଛି । ଶୀଘ୍ର ଘରେ ପହଞ୍ଚି ମତେ ଖାଇବାକୁ ଦିଅ ।" ସେତିକିବେଳ ତୃତୀୟ ସ୍ତ୍ରୀ ଲୋକଟିର ପୁଅ ଆସିଲା ଏବଂ କହିଲା, "ମା' ମୁଁ ତ ଆସୁଥିଲି ପାଣି ଆଣିବାକୁ ତୁମେ ନଦୀକୁ ଗଲ କାହିଁକି ?" ଏକଥା କହି ସେ ତା'ର ମା'ପାଖରୁ ପାଣି ମାଠିଆ ନେଇ ଚାଲିଗଲା ।

ବାକି ସ୍ତ୍ରୀ ଲୋକ ଦେଖୁଥିଲେ । ମନକୁ ମନ ପ୍ରଶ୍ନ କଲେ– ପ୍ରକୃତ ପୁଅ ବୋଲାଇବାର ଯୋଗ୍ୟ ଇଏ ।

ବରଜୁନଗର, ଚହଟା, ଜାରକା, ଧର୍ମଶାଳା-୭୫୫୦୦୮,
ଯାଜପୁର ।

---



✪ ସ୍ୱାମୀସ୍ତ୍ରୀ ଅନେକ ଡେରି ରାତିରେ ଭୋଜି ଖାଇ ଘରକୁ ଫେରିଲେ । ଘରେ ତାଲା ପଡ଼ିଥିଲା, ତେଣୁ ସ୍ୱାମୀ ଟର୍ଚ୍ଚ ଦେଖାଇଲେ ଓ ସ୍ତ୍ରୀ ତାଲା ଖୋଲିବାରେ ବ୍ୟସ୍ତ ରହିଲେ । ତାଲା ଜମା ଖୋଲିଲା ନାହିଁ ।

ତେଣୁ ସ୍ତ୍ରୀଟି ରାଗିମାଗି ତାଲା ତିଆରି କରିଥିବା ଲୋକକୁ ଗାଳିଦେବାରେ ଲାଗିଲା । ଶେଷରେ ସେ ବ୍ୟସ୍ତ ହୋଇ ସ୍ୱାମୀଙ୍କ ହାତକୁ ଚାବିଟି ବଢ଼ାଇଦେଇ ନିଜେ ଟର୍ଚ୍ଚ ଧରିଲା ।

ତାଲା ଖୋଲିଗଲା । ସ୍ୱାମୀ କିଛି କହିବା ଆଗରୁ ସ୍ତ୍ରୀ କହିଲେ, ''ଶିଖିଲ ତ, କେମିତି ଟର୍ଚ୍ଚ ଧରିବାକୁ ହୁଏ । ମୁଁ ଠିକ୍‌ଭାବେ ଟର୍ଚ୍ଚ ଧରିବାରୁ ସିନା ତମେ ଆରାମରେ ତାଲା ଖୋଲିଦେଲ !''

**ଅଛି-ନାହିଁ ର ଉତ୍ତର–** ୧ । ପାଣି ଫୋଟକାର ସଂଖ୍ୟା କମ୍, ୨। ଟୋପି ଆଗରେ ଗୋଟିଏ ଲାଇଟ୍ ନାହିଁ, ୩ । କାନର ଭାଙ୍ଗ ଭିନ୍ନ, ୪ । ତଳେ ଘାସବୁଦା ଅସମାନ, ୫। ମତ୍ସ୍ୟ କନ୍ୟାର ଟୋପିର ପଟି ବୋତାମ ଅସମାନ ।



କଦମ୍ କଦମ୍ ବଢ଼ାଏ ଯା
ବତନ୍ କା ଧନ୍ ଖାଏ ଯା



ଭଲପାଇବା, ସ୍ନେହ କରିବା, ଭକ୍ତି କରିବା ଇତ୍ୟାଦି ମଣିଷର ସହଜାତ ଗୁଣ । ଶିଶୁମାନଙ୍କଠାରେ ଏସବୁ ମୂଳରୁ ରହିଥାଏ । ବଡ଼ ହେଲା ପରେ ବିଭିନ୍ନ ପ୍ରକାରର ପରିବେଶ ତଥା ପ୍ରତିକୂଳ ପରିସ୍ଥିତି ଯୋଗୁ ସେମାନଙ୍କ ମଧ୍ୟରେ ଥିବା ଏ ସବୁ ପ୍ରବୃତ୍ତି ଉପରେ ପର୍ଦ୍ଦା ପଡ଼ିଯାଏ; ନ ହେଲେ ସେମାନେ କାହିଁକି ଚୋରି, ଧର୍ଷଣ ଇତ୍ୟାଦି ଅପକର୍ମ କରନ୍ତେ ?

ଭଲପାଇବା ବା ସ୍ନେହ କଥା କହିଲେ ଆମେ ଦେଖିବା ମହାଭାରତରେ ଜଣେ ଜନନୀଙ୍କର ଭଲପାଇବା ଆଉ ଶ୍ରୀକୃଷ୍ଣ ବାଲ୍ୟଲୀଳାରେ ଦେଖିବା ଯଶୋଦାଙ୍କର ବାତ୍ସଲ୍ୟ ଭଲପାଇବା । ସେଇ ଦୁଇ ଜନନୀଙ୍କ ମଧ୍ୟରେ ତୁଳନା କଲେ ଆମେ ଜାଣିପାରିବା ଗାନ୍ଧାରୀ କ'ଣ ଶହେ ପୁଅଙ୍କୁ ଭଲ ପାଉ ନ ଥିଲେ ? ସେମାନେ ଦୁଷ୍ଟଚରିତ୍ର ହୋଇଥିଲେ ମଧ୍ୟ ଜନନୀ କ'ଣ କେବେହେଲେ ସେମାନଙ୍କୁ ସ୍ନେହର ଭାଗ ଊଣା କରିଥିଲେ ? ସେ ଆଶୀର୍ବାଦ କଲେ, "ଅକ୍ଷୟ ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।" ମାତ୍ର ଶେଷରେ କ'ଣ ହେଲା ? ପୁତ୍ରମାନଙ୍କର ମୃତ୍ୟୁର ପ୍ରତିଶୋଧର କ୍ରୋଧାଗ୍ନି ତାଙ୍କର ଅନ୍ତରରେ ଫୁଟୁଥିଲା, ଯାହାକି ଶେଷରେ ତାଙ୍କର ଜଣେ ବଞ୍ଚିଥିବା ପୁତ୍ର ପାଇଁ କାଳ ହେଲା ।

ଯଶୋଦା କିନ୍ତୁ ଶ୍ରୀକୃଷ୍ଣଙ୍କ ପ୍ରତି ବାତ୍ସଲ୍ୟ ସ୍ନେହରେ ଅନ୍ଧ ଥିଲେ । ଗୋଟିଏ ମୁହୂର୍ତ୍ତ କୃଷ୍ଣଙ୍କର ଅନୁପସ୍ଥିତି ସେ ସହ୍ୟ କରି ପାରୁ ନ ଥିଲେ । ତାହା ଥିଲା ଭକ୍ତିରେ ରୂପାନ୍ତରିତ ସ୍ନେହ ।

ଏଇଠି ମୋର କହିବା କଥା ହେଲା, ଜନନୀର ଭଲପାଇବା ହେଲା ଏକପ୍ରକାରର ଅନୁଭବ– ଯାହା ତ୍ୟାଗ, ତିତିକ୍ଷାଠାରୁ ମଧ୍ୟ ଊର୍ଦ୍ଧ୍ୱରେ ।

ମାତାପିତା ଉଭୟେ ପରିବାରର ମଙ୍ଗଳ ଚାହାନ୍ତି । ପିଲାମାନେ ଭଲରେ ରହିଲେ ମାତା, ପିତା ଉଭୟେ ଆନନ୍ଦ ଲାଭ କରନ୍ତି । ଧରନ୍ତୁ, ପିଲାଟି ଜଣଙ୍କୁ ହତ୍ୟା କରି ଆସି ମା', ବାପାଙ୍କର ଶରଣ ନେଲା । ବାପା ହଠାତ୍ ପଚାରିବେ– କ'ଣ କଲୁ ଚଣ୍ଡାଳ ! ଏତେ ବଡ଼ ପାପ କାମ ତୁ କେମିତି କଲୁ ? ବର୍ତ୍ତମାନ ଚାଲ ଥାନାକୁ ! ଇତ୍ୟାଦି ଇତ୍ୟାଦି ।

ହେଲେ ସେଇଠି ମା'ର କଥା କ'ଣ ହୋଇପାରେ ? ପ୍ରଥମେ ମା' ପୁଅକୁ କୋଳେଇନେବ । ତା'ପରେ ଯାହା ବୁଝେଇବ ବା ପଚାରିବ ବା ସମାଧାନର ବାଟ ଦେଖେଇବ । ପ୍ରଥମେ ମା' କୋଳେଇନେବା ହିଁ ତାର ପୁତ୍ର ପ୍ରତି ସ୍ନେହର ଲକ୍ଷଣ । ହେଲେ ବାପାଙ୍କର ସ୍ନେହର ଲକ୍ଷଣ ଭିନ୍ନ । ସେ ତାଗିଦା କରନ୍ତି, ଶାସନ କରନ୍ତି ପିଲାର ମଙ୍ଗଳ ପାଇଁ । ଏଇ ଜାଗାରେ ହିଁ ଆମେ ଦ୍ୱନ୍ଦ୍ୱରେ ପଡ଼ିଯାଉ– କ'ଣ କରାଯିବ ? ମା' ସ୍ନେହକୁ ତ ମାପିହେବନି ! ସମସ୍ତେ କହନ୍ତି ଯେ ମା'ର ଗେହ୍ଲା ଯୋଗୁ ପୁଅ ବିଗିଡ଼ିଗଲା ।

ମୋ ପାଖରେ ଜଣେ ସାହାଯ୍ୟକାରୀ ସ୍ତ୍ରୀଲୋକ ରହିଛି । ତା'ର ଗୋଟିଏ ପୁଅ କେବଳ । ସେ ନିଶାଖୋର । ତା'ର ସବୁବେଳେ ପଇସା ଦରକାର, କାରଣ ନିଶାପାଣି ପିଇବ । କନ୍ଦାକଟା କରି ମା' ତାର ଗୋଡ଼ତଳେ ଦିନେ ପଡ଼ିଲା, "ତୁ ଯା' ମୋ ଆଖି

ସାମନାରୁ, ବାହାର୍, ମରି ଯା !”, ଇତ୍ୟାଦି ଇତ୍ୟାଦି କହି ପାଟି କଲା । ତା’ପରଠାରୁ ପୁଅ ଆଉ ଆସିଲାନି ଅନେକ ଦିନ ପର୍ଯ୍ୟନ୍ତ ।

କିନ୍ତୁ ତା’ପରେ ତା’ର ମା’ ସବୁଦିନ ବାହାରେ ବସି ତା’ପୁଅକୁ ଜଗିଥିବା ମୁଁ ଦେଖେ । ଦିନେ ଦେଖିଲି ଗୋଟିଏ ଜରି ପୁଡ଼ିଆରେ ପିମ୍ପୁଡ଼ି ଲାଗିଯାଇଥିବା ଲଡୁଟିଏ । ତା’ପୁଅ ପାଇଁ ବୋଧହୁଏ ରଖିଥିଲା । ଏଇଠି କ’ଣ ଆମେ ଭାବିବା ? ମା’ର ଅନ୍ଧ ଭଲପାଇବା ପିଲାଙ୍କୁ ବିଗାଡ଼ିଦେଲା । ପ୍ରକୃତ କଥା ହେଲା– ତାହା ହିଁ ସତକଥା । ମା’ ତାର ଭଲପାଇବାକୁ ଭୁଲ୍ ବାଟରେ ନେଇଯାଏ । ମୋର ପ୍ରଶ୍ନ ହେଉଛି– ସେ ଯଦି କୋଳରେ ବସାଇ, ଭଲପାଇ ତାକୁ ବୁଝେଇଥାନ୍ତା, ତା’ହେଲେ ସେ ଠିକ୍ ବାଟକୁ ଆସିଥାନ୍ତା କି ? ସନ୍ତାନ ପାଇଁ ମା’ର ଦୁଃଖ, ହତାଶା ଅନ୍ତରକୁ ଦହିଦିଏ । ସେଠାରେ ମା’କୁ କିଛି ଆଉ ବୁଦ୍ଧିବାଟ ଦିଶେନି । ମା’ଟିଏ କେତେ ନିଷ୍ଠୁର ହୋଇପାରିବ ? ମୁଁ ବେଳେବେଳେ ଭାବେ ।

ଭୀଷ୍ମ ଯେତେବେଳେ ଗଙ୍ଗାମାତାଙ୍କ ନିକଟକୁ ଗଲେ ଅନେକ ଥର ସମସ୍ୟାର ସମାଧାନ ପାଇଁ, ସେତେବେଳେ ଗଙ୍ଗାମାତା କହିଲେ, “ସବୁବେଳେ କ’ଣ ମୋତେ ପଚାରିବାକୁ ଚାଲିଆସୁଛୁ ? ନିଜେ ତା’ର ସମାଧାନ କର ! ଯେତେବେଳେ ଅସୁବିଧାରେ ପଡୁଛୁ, ମୋ ଉପରେ ନିର୍ଭର କାହିଁକି କରୁଛୁ ?” ଏହା ହିଁ ପ୍ରକୃତ ଭଲପାଇବା । ମା’କୁ ନିଷ୍ଠୁରତା ଆଚରଣ କରିବାକୁ ପଡ଼େ ପୁଅର ମଙ୍ଗଳ ପାଇଁ ।

ଠିକ୍ ଏମିତି ଆଜିକାଲି ଯୁବପିଢ଼ି ବିଭ୍ରାନ୍ତ ହେବାର କାରଣ ମା’ବାପାଙ୍କର ଶାସନ ଓ ସ୍ନେହର ସଂଘର୍ଷ । ତାହା ହିଁ ଆମେ ଦେଖୁଛୁ ସମାଜରେ । ପିଲାମାନେ ଉଦ୍‌ଭ୍ରାନ୍ତ ହୋଇ ସମାଜର ପରିବେଶକୁ ଦୂଷିତ କରିବାରେ ଲାଗିଛନ୍ତି ।

ତେଣୁ ଶେଷକଥା– ପିଲାମାନଙ୍କ ସ୍ନେହ ଓ ଶାସନର ସଫଳତା ଓ ବିଫଳତାର ଫଳ ଆମ ପିଲାମାନଙ୍କର ଭବିଷ୍ୟତ । ସେହି ଅନୁସାରେ ବର୍ତ୍ତମାନ ଆମକୁ ବହୁ କଷ୍ଟ ସ୍ୱୀକାର କରି ହୃଦୟର ସ୍ନେହ ଓ ଶ୍ରଦ୍ଧା ଉପରେ ପଥର ରଖି ପିଲାଙ୍କୁ ମଣିଷ କରିବାକୁ ପଡ଼ିବ; ତା’ ନ ହେଲେ ଏ ସମାଜ ଯୁବପିଢ଼ିଙ୍କର ଦୌରାତ୍ମ୍ୟରୁ ରକ୍ଷା ପାଇ ପାଇପାରିବ ନାହିଁ ।

**ଅନସୂୟା ନନ୍ଦ**

---

ଉପର ପ୍ରଦତ୍ତ ଚିତ୍ରକୁ ଦେଖି କୁହନ୍ତୁ- ବୋତଲରୁ ପାଣି ଢଳାହେଲେ କେଉଁ ବୋତଲ ଆଗ ପୂର୍ଣ୍ଣ ହେବ ।



## ମରିନାହିଁ ସିଏ ମରଣଜୟୀ

ଶ୍ରୀ କୁଞ୍ଜବିହାରୀ ସାହୁ

ଦେଶ ପ୍ରେମ ବହ୍ନି ପ୍ରଜ୍ୱଳିତ କରି ସ୍ୱାର୍ଥକୁ ଆହୁତି ଦେଲେ,
ଦଳିତ-ଗଳିତ ମାନବ ସେବାରେ ନିଜକୁ ମଜାଇ ନେଲେ ।
ପୁତ୍ର,ପତ୍ନୀ ସ୍ନେହ ସୋହାଗ ଏଡ଼ାଇ ବର୍ଷଣମୁଖର ରାତେ
ପାଦପକେଇଲେ ବିଭୀଷିକାସ୍ଥଳେ ସାହାଯ୍ୟ ବାଣ୍ଟିଲେ କେତେ ।
ମହାତ୍ମା ଗାନ୍ଧୀଙ୍କ ପଥରେ ପଥିକ ହୋଇଲେ ଉତ୍କଳ ପାଇଁ
ଜାତୀୟ ପ୍ରୀତିର ପତାକା ଉଡ଼ାଇ ସାଜିଲେ ଉତ୍କଳ ସାଇଁ ।
ଦୁଃଖଦ ଶୈଶବ, ଦୁଃଖଦ କୈଶୋର, ପଙ୍କିଳ ଜୀବନ-ବାଟ
ପଛକୁ ନ ଫେରି ଚାଲିଲେ ଆଗକୁ ଭାବିଲେ ଜୀବନ-ନାଟ ।
ଦରଦୀ, ବିଶ୍ୱାସୀ, ଆଦର୍ଶବାଦୀ ସେ ଭରସାର ବତୀଘର,
ବିଶ୍ୱେ ହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ ଥିଲା କବିତାର ସ୍ୱର ।
ବିସ୍ମରି ମନରୁ ଘାତ-ପ୍ରତିଘାତ ଶାରୀରିକ ଦୁଃଖ-କ୍ଲେଶ,
ମୂଳ ଲକ୍ଷ୍ୟ ଥିଲା ଶିଳ୍ପ, ଶିକ୍ଷା, ସେବା ସ୍ୱାଧୀନ ଭାରତ ବର୍ଷ ।
ତ୍ୟାଗ ଓ ତିତିକ୍ଷା, ସାଧନା, ପ୍ରତିଭା ସତେକି ଆକାଶ ଚୁମି
ଐକାନ୍ତିକ ଭାବ ମନ୍ତ୍ରରେ ସାଧକ ଛୁଇଁଛି ଉତ୍କଳ ଭୂମି ।
ଆପଣା ଛାତିକୁ ପଥରେ କିରଛି ଲୁହ ଓ ଲହୁକୁ ପିଇ,
ଜୀବନ ଯୁଦ୍ଧରେ ହାରିନି କେବେ ସେ ହୋଇଛି ମରଣଜୟୀ ।
ଉତ୍କଳମଣି ବୋଲାଇ ଚୌଦିଗେ ହୋଇଲେ ସଂସାରେ ସାର,
ଆମ ଗୋପବନ୍ଧୁ ଦୁଃଖୀ ରଙ୍କି ବନ୍ଧୁ ନିଅ କୋଟି ନମସ୍କାର ।

ଏଲ୍.ଆଇ.ଜି-୧୫, ନୟାପଲ୍ଲୀ ବ୍ରିଟ୍ କଲୋନୀ,
ଭୁବନେଶ୍ୱର-୭୫୧୦୧୨



# ଶ୍ରଦ୍ଧାଞ୍ଜଳି

## ଦେବୁ ଦା'

ଦେବୁ ଦା' କହିଲେ ଓଡ଼ିଆ ଚଳଚ୍ଚିତ୍ର ଜଗତରେ ଜଣଙ୍କୁ ବୁଝାଏ, ସେ ହେଲେ ଦେବୁ ବୋଷ । ୧୯୪୨ ମସିହା ଡିସେମ୍ବର ୨ ତାରିଖରେ ଜନ୍ମଲାଭ କରିଥିବା ଏହି ବରିଷ୍ଠ ଓଡ଼ିଆ ଚଳଚ୍ଚିତ୍ର ଅଭିନେତା ଓ ମଞ୍ଚ, ଦୂରଦର୍ଶନ ତଥା ରୁପେଲି ପରଦାରେ ଦୀର୍ଘ ଚାରି ଦଶନ୍ଧି ଧରି ନିଜର ପ୍ରତିଭା ପରିବେଷଣ କରି ୨୨ ଅଗଷ୍ଟ ୨୦୧୮ ମସିହା ଛଅସ୍ତରୀ ବର୍ଷ ପରଲୋକ ଗମନ କଲେ । ଓଡ଼ିଆ ଚଳଚ୍ଚିତ୍ର ଜଗତର ଜଣେ ଯଶସ୍ୱୀ ବର୍ଷିଆନ୍ କଳାକାରଙ୍କର ଦେହାନ୍ତ ହେଲା ।

ହାଇଦ୍ରାବାଦର ଏକ ଘରୋଇ ହାସପାତାଳରେ ହୃଦ୍‌ରୋଗରେ ପୀଡ଼ିତ ହୋଇ ଚିକିତ୍ସିତ ଅବସ୍ଥାରେ ଇହଲୀଳା ସାଙ୍ଗ କରିଛନ୍ତି । ମୃତ୍ୟୁଶଯ୍ୟା ନିକଟରେ ତାଙ୍କର ଦୁଇ ପୁଅ ଓ ଝିଅ ସମେତ ପରିବାରବର୍ଗ ଉପସ୍ଥିତ ଥିଲେ । ସେ ଥିଲେ ବାପା ଚରିତ୍ର ପାଇଁ ଧରାବନ୍ଧା ଅଭିନେତା । 'ତପସ୍ୟା' ଚଳଚ୍ଚିତ୍ରରୁ ୧୯୮୦ ମସିହାରେ ଅଭିନୟ ଆରମ୍ଭ କରି ସେ ୧୩୦ରୁ ଅଧିକ ଛବିରେ ଅଭିନୟ କରି ଲୋକପ୍ରିୟ ହୋଇପାରିଥିଲେ ।

ଚାରିଦଶକ ଧରି ଚରିତ୍ର ଅଭିନେତା ଭାବେ ବିଭିନ୍ନ ଧରଣର ଭୂମିକାକୁ ଜୀବନ୍ତ ରୂପ ଦେଇପାରିଥିବାରୁ ମୃତ୍ୟୁ ସମୟ ପର୍ଯ୍ୟନ୍ତ ସେ ମଞ୍ଚଠାରୁ ବଡ଼ ପରଦା ଓ ସାନପରଦା– ଏପରିକି ଭଜନ ସିଡି ଇତ୍ୟାଦିରେ ଅଭିନୟ କରିବାରେ ନିଜକୁ ହଜାଇଦେଇଥିଲେ ।

'ପୁଅ ମୋର କଳାଠାକୁର', 'ସମୟ ଖେଳୁଛି




ସାଧାରଣତଃ ଆଜିର ଦୁନିଆଁରେ ବାପ ଓ ପୁଅ ମଧ୍ୟରେ ଗ୍ୟାରେଣ୍ଟର ପଡ଼ିଲା ବେଳକୁ ଭାବିଚିନ୍ତି ଆଗପଛ ହେଉଥିବାର ଦେଖାଯାଇଥାଏ । ସେ ଜଣେ ସ୍ୱଷ୍ଟବାଦୀ ଓ ସମସ୍ତଙ୍କୁ ସବୁ କ୍ଷେତ୍ରରେ ପାରୁପର୍ଯ୍ୟନ୍ତ ସହଯୋଗ କରିବାକୁ ପ୍ରସ୍ତୁତ୍ ଥିଲେ ।

ଦେବୁ ବୋଷ ଜଣେ ସଫଳ ମଞ୍ଚ ଓ ଚଳଚ୍ଚିତ୍ର ଅଭିନେତା ଭାବରେ ଯେତିକି ପରିଚିତ ଥିଲେ, ସେହିଭଳି ଜଣେ ସୁଦକ୍ଷ ନୃତ୍ୟଶିଳ୍ପୀ ଓ କୋରିଓଗ୍ରାଫରର ଦକ୍ଷତାରେ ପ୍ରଶଂସନୀୟ ଥିଲେ । ସେ ସରକାରୀ ଚାକିରିରେ ମଧ୍ୟ ଜଣେ ଉଚ୍ଚ ପଦାଧିକାରୀ ଥିଲେ । ଶ୍ରେଷ୍ଠ ନୃତ୍ୟଗୁରୁ କେଳୁଚରଣ ମହାପାତ୍ରଙ୍କ ଅଧୀନରେ ସେ ନୃତ୍ୟ ଶିକ୍ଷା କରୁଥିଲେ । ଏତଦ୍‌ଭିନ୍ନ ଅନେକ ନାଟକ, ଆଞ୍ଚଳିକ ଥିଏଟର୍ ଗ୍ରୁପ୍‌ରେ ସେ ନିର୍ଦ୍ଦେଶନା ଦେଇ ଜଣେ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଭାବେ ଓଡ଼ିଶାରେ ପରିଚିତ ଥିଲେ । 'ଦିଗନ୍ତ' ନାଟକ ସଂସ୍ଥାରେ ଥାଇ ସେ ଓଡ଼ିଶାରେ ଦକ୍ଷ କଳାକାର ତଥା ଶିଳ୍ପୀମାନଙ୍କୁ ନେଇ ପୁରସ୍କୃତ ହୋଇଥିଲେ ଓ ଦମଦାର୍ କାହାଣୀକୁ ନାଟ୍ୟରୂପ ଦେଇ ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ କରୁଥିଲେ ।

ଚକାଭଉଁରୀ', 'କି ହେବ ଶୁଆ ପୋଷିଲେ', 'ଫୁଲ ଚନ୍ଦନ', 'ସୁନା ଚଢ଼େଇ', 'ଛାତି ଚିରିଦେଲେ ତୁ', 'ଆଜି ଆକାଶେ କି ରଂଗ ଲାଗିଲା', 'ସତ୍ୟମେବ ଜୟତେ' ଇତ୍ୟାଦି ସହିତ ଦେବୁ ବୋଷଙ୍କର ଶେଷ ଅଭିନୀତ ଓଡ଼ିଆ ଛବି ଥିଲା– 'ରାସ୍ତା', ଯାହା ଏବେ ୨୦୧୪ ମସିହାରେ ମୁକ୍ତିଲାଭ କରିଥିଲା । ଅନେକ ବଙ୍ଗଳା ଛବିରେ ମଧ୍ୟ ସେ ଅଭିନୟ କରି ସମ୍ମାନିତ ହୋଇଛନ୍ତି । ଅଜିତ ଦାସ ଦେବୁ ବୋଷଙ୍କର ସଂପର୍କରେ– ସେ ଜଣେ ସ୍ୱଚ୍ଛ ବ୍ୟକ୍ତିବିଶେଷ, ଦେବପ୍ରତିମ ଏବଂ ସମସ୍ତଙ୍କର ଆଦରଣୀୟ ମଣିଷ ଭାବରେ ମତ ବ୍ୟକ୍ତ କଲାବେଳେ ଛୋଟ ଘଟଣାଟିଏ ଅବତାରଣା କରି କହିଥିଲେ–

ଥରେ ମୁଁ ତାଙ୍କ ନିକଟକୁ ଏମିତି ଏକ ବ୍ୟକ୍ତିଗତ କାମରେ ଯାଇଥିଲି । ମୋର ଗୋଟିଏ ଘର କିଣିବାର ଥାଏ । ତାଙ୍କୁ ସେଥିରେ ଗ୍ୟାରେଣ୍ଟର୍ ରଖିବାକୁ ପ୍ରସ୍ତାବ ଦେବାରୁ ସେ ତାହାକୁ ସାଦରରେ ଗ୍ରହଣ କରି ନେଇଥିଲେ ।








## ପୁସ୍ତକ ପରିଚୟ

**ରଜ ମଉଜ- ଲେଖକ- ଶ୍ରୀ ସୁଶାନ୍ତ କୁମାର ପାତ୍ର,** ଅରିଓ, ଜାଗୁଳାଇପଡ଼ା, ଡେରାବିଶ, କେନ୍ଦ୍ରାପଡ଼ା- ୭୫୪୨୮୯, ମୂଲ୍ୟ- ୪୦ ଟଙ୍କା, ଦୂରଭାଷ- ୯୯୩୭୫୪୦୬୬୭ ।

ଅଜାଙ୍କ ମନ କଥା, କର୍ମର ଜୟଗାନ, ଆଇ ପକାଇବେ କଟି, ପ୍ରଭାସ ଯଜ୍ଞ ଇତ୍ୟାଦିକୁ ନେଇ ଅଠରଟି ଶିଶୁ କବିତା ସ୍ଥାନିତ ଏହି ଡିମେଇ ୧/୮ ଆକାରର କବିତା ପୁସ୍ତକଟିରେ । କବିତାଗୁଡ଼ିକ ସରଳ ଭାଷାରେ ଲେଖା ହେବା ସହ ନୀତିଶିକ୍ଷା ମଧ୍ୟ ରହିଛି । ପ୍ରତ୍ୟେକ କବିତାରେ ଛୋଟ ଛୋଟ ଚିତ୍ର ରହିଛି, ଯାହାକି ଶିଶୁ-କିଶୋରମାନଙ୍କର ଦୃଷ୍ଟି ଆକର୍ଷଣ କରିବ । ପ୍ରଚ୍ଛଦଟି ରଂଗିନ୍ ଏବଂ ଦୁଇଟି କିଶୋରୀ ରଜ ଦୋଳି ଖେଳୁଥିବାର ଦୃଶ୍ୟ ମନୋମୁଗ୍ଧକର । ଶିଶୁମାନଙ୍କ ଦ୍ୱାରା ପୁସ୍ତକଟି ଆଦୃତ ହେବାର ଆଶା ।

**ମୋ' ସିଲଟ ଶୁଖି ଯା'- ଲେଖକ- ଶ୍ରୀ ନଗେନ୍ଦ୍ରନାଥ ପଟ୍ଟନାୟକ,** ଶ୍ରୀରାମପୁର, ତିରଣ, ତିର୍ତ୍ତୋଲ, ଜଗତସିଂହପୁର, ମୂଲ୍ୟ- ୫୦ଟଙ୍କା ।

କ୍ରାଉନ୍ ଆକାରର ଏହି ସୁଦୃଶ୍ୟ ଶିଶୁ-କବିତା ପୁସ୍ତକରେ ଉଇଁଲା ନୂତନ ରବି, ଖସ୍ ଖସ୍ ତାର ନାଆଁ, କାଳି ଦୁଆତ, ଓଡ଼ିଶା ମାଟିର ପୁଅ ଇତ୍ୟାଦି ବାରଟି ଶିଶୁ-କବିତା ରହିଛି ।

ବେଶ୍ ସୁନ୍ଦର ବଡ଼ ବଡ଼ ଚିତ୍ର କବିତାଗୁଡ଼ିକର ଶୋଭା

ମୁଁ ମଧ୍ୟ ୮୦ ଦଶକରେ ତାଙ୍କ ରଚିତ ନାଟକ– 'ଅନ୍ୟ ମନ ମନାନ୍ତର' ନାଟକରେ ଅଭିନୟ କରିବାର ସୁଯୋଗ ଲାଭ କରିଥିଲି । ଏହି ସଂସ୍ଥାର ସଫଳ ନିର୍ଦ୍ଦେଶକ ପି.ସି. ଦାସ ତାଙ୍କ ରଚିତ ଅନେକ ନାଟକକୁ ପ୍ରଦର୍ଶନ କରି ନାଟ୍ୟ ଜଗତରେ ଚହଳ ସୃଷ୍ଟି କରିଥିଲେ । ନାଟକମନସ୍କ ଦେବୁ ଦା' ଥରେ କହିଥିଲେ– ନାଟକ ପାଇଁ ମୋ ସ୍ତ୍ରୀ ଆଉ କୁକୁରକୁ ଛାଡ଼ି ଆଉ ଯାହା ଦରକାର, ତମେ ମୋ ଘରୁ ନେଇପାର ।

ଦେବୁ ବୋଷଙ୍କର ମୃତ୍ୟୁ ଓଡ଼ିଶା ଚଳଚ୍ଚିତ୍ର ଦୁନିଆ ପାଇଁ ଏକ ଦୁଃଖ ଓ ଅପୂରଣୀୟ କ୍ଷତି ବୋଲି ମତ ଦେଇ ବହୁ ଅଭିନେତା ଓ ଅଭିନେତ୍ରୀ ଶୋକ ସମାଚାରରେ ତାଙ୍କ ଅମର ଆତ୍ମା ପ୍ରତି ଶେଷ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ।

'ଆଶ୍ରମ ବିହାର', ଶ୍ରୀବିହାର କଲୋନୀ, କଟକ -୮



ବର୍ଦ୍ଧନ କରୁଛି । ବଡ଼ ବଡ଼ ଅକ୍ଷରରେ ସରଳ, ଶିକ୍ଷଣୀୟ କବିତାଗୁଡ଼ିକ ଶିଶୁ ମନଲାଖି ହୋଇପାରିଛି । ରଙ୍ଗିନ୍ ପ୍ରଚ୍ଛଦରେ ଦୁଇଟି ପିଲା ସିଲଟ ଧରି ବସିଥିବାର ଚିତ୍ର ଆକର୍ଷଣୀୟ । ପୁସ୍ତକଟିର ପ୍ରସାର କାମନା କରୁ ।

**ବିଦ୍ୟା ଅଟଇ ମହାଧନ- ଲେଖକ- ଶ୍ରୀ ଗୋବିନ୍ଦ ପ୍ରସାଦ ଭଟ୍ଟାଚାର୍ଯ୍ୟ,** ଭାଟପଡ଼ା, ତିହିଡ଼ି, ଭଦ୍ରକ, ମୂଲ୍ୟ- ୩୦ଟଙ୍କା, ଦୂରଭାଷ- ୯୨୩୭୦୦୧୪୦୮ ।

ରାଜା ଜୟଧ୍ୱନି, ତିନୋଟି ପ୍ରଶ୍ନ, ପକ୍ଷପାତ, ଆଚରଣ ଇତ୍ୟାଦି ୧୦ଟି ଗଳ୍ପ ଏହି ପୁସ୍ତକରେ ସନ୍ନିବେଶିତ ।

ପ୍ରତ୍ୟେକ ଗଳ୍ପ ଶିକ୍ଷଣୀୟ ହେବା ସହିତ ସରଳ ଓ ସାବଲୀଳ । ଅକ୍ଷରଗୁଡ଼ିକ ସ୍ପଷ୍ଟ ଓ ବଡ଼ ବଡ଼, ପିଲାଏ ପଢ଼ିଲା ଭଳି । ଗଳ୍ପଗୁଡ଼ିକରେ ଚିତ୍ର ଦୃଷ୍ଟି ଆକର୍ଷଣ କରେ । ପ୍ରଚ୍ଛଦରେ ଦୁଇଟି ଶିଶୁଙ୍କର ଚିତ୍ର ରହିଛି । ପୁସ୍ତକଟି ଶିଶୁମାନଙ୍କ ଦ୍ୱାରା ଆଦୃତ ହେବାର ଆଶା ।

---

( ୫୪ ପୃଷ୍ଠାର ଅବଶିଷ୍ଟାଂଶ )

ଇତିହାସ ସୃଷ୍ଟି କରି ସମଲିଙ୍ଗୀ ଯୌନ ସମ୍ପର୍କ ଆଉ ଅବୈଧ ବା ଅପରାଧ ବିବେଚିତ ହେବନାହିଁ ବୋଲି ସୁପ୍ରିମ୍ କୋର୍ଟର ଗୁରୁତ୍ୱପୂର୍ଣ୍ଣ ରାୟ ଘୋଷିତ ।

୬ । ୯- ଭାରତ ଓ ଆମେରିକା ମଧ୍ୟରେ (୨+୨) କଥାବାର୍ତ୍ତା ଶେଷ ଏବଂ ପ୍ରତିରକ୍ଷା ବୁଝାମଣା ସ୍ୱାକ୍ଷରିତ । ଆମେରିକା ତାର ପ୍ରତିରକ୍ଷା ଜ୍ଞାନକୌଶଳ ଭାରତକୁ ଯୋଗାଇବ ।

- ୨୦୦୭ ହାଇଦରାବାଦ ଦ୍ୱୈତ ବିସ୍ଫୋରଣ ମାମଲାରେ ୨ ଜଣଙ୍କୁ ମୃତ୍ୟୁ ଦଣ୍ଡାଦେଶ ଓ ଜଣଙ୍କୁ ଆଜୀବନ କାରାଦଣ୍ଡାଦେଶ ।

୧୩ । ୯- କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରଣାଳୟ ପକ୍ଷରୁ ୩୩୪ଟି ଔଷଧର ମିଶ୍ରଣ, ଉତ୍ପାଦନ, ବିତରଣ ଓ ବିକ୍ରି ଉପରେ ନିଷେଧାଦେଶ ଜାରି ।

୧୪ । ୯- ଦୀର୍ଘ ୨୪ ବର୍ଷ ପରେ ଗୁପ୍ତଚର ବୃତ୍ତି ଅଭିଯୋଗରେ ଭାରତୀୟ ମହାକାଶ ଗବେଷଣା ସଂସ୍ଥା (ଇସ୍ରୋ)ର ପୂର୍ବତନ ବୈଜ୍ଞାନିକ ନାମ୍ବି ନାରାୟଣଙ୍କୁ ନ୍ୟାୟ ପ୍ରଦାନ । ୫୦ ଲକ୍ଷ ଟଙ୍କା କ୍ଷତିପୂରଣ ଦେବା ପାଇଁ ସର୍ବୋଚ୍ଚ ନ୍ୟାୟାଳୟର ସରକାରଙ୍କୁ ନିର୍ଦ୍ଦେଶ ।

**ବିଦେଶ ଖବର**

୨୪ । ୮- ଅଷ୍ଟ୍ରେଲିଆ ଅର୍ଥମନ୍ତ୍ରୀ ସ୍କଟ୍ ମରିସନ୍ ଦେଶର ପରବର୍ତ୍ତୀ ପ୍ରଧାନମନ୍ତ୍ରୀ ଭାବେ ନିଯୁକ୍ତ ।

୪ । ୯- ଡାକ୍ତର ଆରିଫ୍ ଆଲଭି ପାକିସ୍ତାନର ୧୩ତମ ରାଷ୍ଟ୍ରପତି ଭାବେ ନିର୍ବାଚିତ ।

୨ । ୯- ୧୮ଶ ଏସୀୟ କ୍ରୀଡ଼ା ରଙ୍ଗାରଙ୍ଗ କାର୍ଯ୍ୟକ୍ରମ ସହିତ ଜାକର୍ତ୍ତାଠାରେ ଉଦ୍‌ଯାପିତ । ୪ ବର୍ଷ ପରେ ପୁଣି ଚୀନ୍‌ର ହାଙ୍ଗଝୌ ସହରରେ କ୍ରୀଡ଼ା ଅନୁଷ୍ଠିତ ହେବ । ୧୫ଟି ସ୍ୱର୍ଣ୍ଣ, ୨୪ଟି ରୌପ୍ୟ, ୩୦ଟି ବ୍ରୋଞ୍ଜ୍ ପଦକ ଜିତି ଏସୀୟକ୍ରୀଡ଼ା ଇତିହାସରେ ଭାରତର ସର୍ବଶ୍ରେଷ୍ଠ ପ୍ରଦର୍ଶନ । ଜାପାନ୍ ରିକାକୋ ଇକି ଚଳିତ କ୍ରୀଡ଼ାର ଶ୍ରେଷ୍ଠ କ୍ରୀଡ଼ାବିତ୍ ଭାବେ ଘୋଷିତ ।

୬ । ୯- ଜାପାନ୍‌ର ହୋକାଇଡୋ ଦ୍ୱୀପରେ ଶକ୍ତିଶାଳୀ ଭୂକମ୍ପରେ ୮ ମୃତ ଓ ୩୩ ନିଖୋଜ ।

୯ । ୯- ୟୁଏସ୍ ଓପନ୍‌ରେ ଜାପାନ୍‌ର ନାଓମି ଓସାକାଙ୍କର ଅନ୍ତିମ ଗ୍ରାଣ୍ଡସ୍ଲାମ୍ ଟେନିସ୍‌ରେ ମହିଳା ସିଙ୍ଗିଲସ୍ ଚମ୍ପିଆନ୍ ଆଖ୍ୟା ହାସଲ ।

୧୦ । ୯- ଦେଶର ଇତିହାସରେ ସର୍ବବୃହତ୍ ସାମରିକ ଅଭ୍ୟାସ ଆରମ୍ଭ । ରୁଷ୍ ପ୍ରାୟୋଜିତ 'ଭୋସ୍ତକ- ୨୦୧୮'ରେ ସପ୍ତାହବ୍ୟାପୀ ସମରାଭ୍ୟାସ ସାଇବେରିଆରେ ଅନୁଷ୍ଠିତ ହେଉଛି ।

୧୫ । ୯- ଫିଲିପାଇନ୍ସରେ ସାମୁଦ୍ରିକ ଝଡ଼ ଯୋଗୁ ପ୍ରାୟ ୪ ନିୟୁତ ଜନସାଧାରଣ ପ୍ରଭାବିତ ଏବଂ ୮ଜଣଙ୍କର ମୃତ୍ୟୁ ।

## ଶବ୍ଦଧନ୍ଦା - ଅକ୍ଟୋବର ୨୦୧୮

ଶ୍ରୀ ଧରଣୀଧର ବେହେରା

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ । ୧୦ ।୨୦୧୮

| | | | | | |
|---|---|---|---|---|---|
| ୧ | ୨ | | ୩ | | ❋ |
| ୪ | | ୫ | ୬ | | ୭ |
| | ❋ | ୮ | | ୯ | |
| ୧୦ | | | ୧୧ | | |
| ୧୨ | ୧୩ | ❋ | | | ❋ |
| ❋ | ୧୪ | | | ୧୫ | |

### ସୂଚନା

**ବାମରୁ ଡାହାଣ--** ୧ । ପୁତ୍ର (୩), ୩ । ଗୁଡ଼ ପ୍ରଭୃତି ରଖିବା ମାଟିପାତ୍ର (୨), ୪ । ବିଳାସ (୩), ୬ । ଔଷଧ (୩), ୮ । ମାଛ/ଚୈତ୍ରମାସ (୨), ୯ । ଗହଳିଆ (୨), ୧୦ । ବୃକ୍ଷହୀନ ପଡ଼ିଆ (୩) ୧୧ । ଅନ୍ୟ/ଶପଥ (୨), ୧୨ । ଚିରାକନା (୨), ୧୪ । ହାତ (୨), ୧୫ । ଶାଳଗଛ (୨) ।

**ଉପରୁ ତଳ--** ୧ । ନୌକା (୩), ୨ । ଆକାଶ (୨), ୩ । ମୁହଁ (୩), ୫ । ପବନ (୩), ୭ । କଷି ପଣସକଠା (୩), ୯ । କର୍ପୂର/ବୃଷ୍ଟିଜଳ (୪), ୧୦ । ପୂର୍ବଦିଗ (୨), ୧୧ । ବିରତି/ନିବୃତ୍ତି (୩), ୧୩ । ଦାନ୍ତ (୨) ।

*ବାଗଲପୁର, ଜଗତସିଂହପୁର-୭୫୪୧୦୨*

---

**ସେପ୍ଟେମ୍ବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ଶୈବାଳ, ୩ । କୋପ, ୫ । ତାରକା, ୮ । ବାୟସ, ୯ । କର, ୧୦ । ଆନ, ୧୧ । ବିଟପୀ, ୧୩ । ବାସି, ୧୪ । ତଥାସ୍ତୁ ।
**ଉପରୁ ତଳ--** ୧ । ଶୈଳ, ୨ । ବାତାୟନ, ୩ । କୋରକ, ୪ । ପୟର, ୬ । ରସନା, ୭ । କାତଳ, ୧୦ । ଆବିଳ, ୧୨ । ପୀତ, ୧୩ । ବାସ୍ତୁ ।

---

**ଗତ ମାସ ଶବ୍ଦଧନ୍ଦାର କୌଣସି ଉତ୍ତର ଆମର ଏପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ ।**

# ପୃଥ୍ୱୀ କ୍ଷଣ-କ୍ଷଣକେ ଆନ

## ଓଡ଼ିଶା ଖବର

୨୬ । ୮– ଜାକର୍ତ୍ତାଠାରେ ଏସୀୟ କ୍ରୀଡ଼ାରେ ୩୨ ବର୍ଷ ବ୍ୟବଧାନ ପରେ ମହିଳା ୧୦୦ ମିଟର ଦୌଡ଼କୁଦରେ ରୌପ୍ୟ ପଦକ ଜିତିଲେ ଦୂତି ଚାନ୍ଦ । ମୁଖ୍ୟମନ୍ତ୍ରୀଙ୍କର ଦେଢ଼କୋଟି ଆର୍ଥିକ ପୁରସ୍କାର ଘୋଷଣା ।

୨୮ । ୮– ଓଡ଼ିଶାର ଆଇନଜୀବୀ ଓ ପରିବେଶ ବିଶେଷଜ୍ଞ ସତ୍ୟସୁନ୍ଦର ତ୍ରିପାଠୀ ଜାତିସଂଘର ସହକାରୀ ମହାସଚିବ ନିଯୁକ୍ତ ।

୨ । ୯– ରାଜ୍ୟର ୭ମ ସରକାରୀ ମେଡିକାଲ୍ କଲେଜ ଭାବେ ବାଲେଶ୍ୱରର ରେମୁଣାଠାରେ ନବନିର୍ମିତ 'ଫକୀର ମୋହନ' ମେଡିକାଲ୍ କଲେଜ୍ ଓ ହସ୍‌ପିଟାଲ୍ ଲୋକାର୍ପିତ ।

୨ । ୯– ଅବସରପ୍ରାପ୍ତ କର୍ମଚାରୀଙ୍କୁ ପୁନଃନିଯୁକ୍ତି ଦିଆଯିବ ନାହିଁ ବୋଲି ରାଜ୍ୟ ସରକାରଙ୍କର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ।

୨ । ୯– ରାଜ୍ୟର ଡାକ ବିଭାଗର ପୋଷ୍ଟ ପେମେଣ୍ଟସ୍ ବ୍ୟାଙ୍କ ସେବା ଆରମ୍ଭ । ପ୍ରତ୍ୟେକଙ୍କ ଘରେ ପହଞ୍ଚିବ ଡିଜିଟାଲ୍ ବ୍ୟାଙ୍କ୍ ସେବା ।

୩ । ୯– ବ୍ଲୁ ହ୍ୱେଲ୍ ପରେ 'ମୋମୋ ଚାଲେଞ୍ଜ' ବିପଜ୍ଜନକ ଖେଳରୁ ଦୂରେଇ ରହିବାକୁ କ୍ରାଇମବ୍ରାଞ୍ଚ୍ ପୁଲିସ୍ ପକ୍ଷରୁ ନିର୍ଦ୍ଦେଶନାମା ଜାରି ।

୭ । ୯– ମହାନଗର ନିଗମ ମେୟର, ପୌରପରିଷଦ ଏବଂ ବିଜ୍ଞାପିତ ଅଞ୍ଚଳ ପରିଷଦ ଅଧ୍ୟକ୍ଷ ପାଇଁ ଏଣିକି ପ୍ରତ୍ୟକ୍ଷ ନିର୍ବାଚନ ଅନୁଷ୍ଠିତ ହେବା ପାଇଁ କ୍ୟାବିନେଟ୍‌ର ମଞ୍ଜୁରୀ ।

୧୨ । ୯– ମନ୍ତ୍ରୀ ପଦରୁ ବହିଷ୍କୃତ ହେବା ପରେ ବିଜୁ ଜନତା ଦଳରୁ ଦାମୋଦର ରାଉତ ବହିଷ୍କୃତ ।

୧୩ । ୯– ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ରାସ୍ତା ନିର୍ମାଣ କରିବାରେ ଦେଶର ପ୍ରଥମ ରାଜ୍ୟ ଭାବେ ଓଡ଼ିଶା ପୁରସ୍କୃତ ।

୧୫ । ୯– ବିଶିଷ୍ଟ ଐତିହାସିକ, ଶିକ୍ଷାବିତ୍ ଡକ୍ଟର ରମାକାନ୍ତ ରାୟଙ୍କର ୭୮ ବର୍ଷରେ ପରଲୋକ । ସେ ଗଙ୍ଗାଧର ସାହିତ୍ୟର ଜଣେ ବିଶିଷ୍ଟ ପୃଷ୍ଠପୋଷକ ଥିଲେ ।

୧୮ । ୯– ନିୟମଗିରି ଅଞ୍ଚଳରେ ବଜ୍ରପାତରେ ୧୦୨ଟି ଗାଈଙ୍କର ମୃତ୍ୟୁ ।

୨୦ । ୯– ଛାତ୍ରଛାତ୍ରୀଙ୍କର ନିକଟରେ ବୋର୍ଡ କର୍ତ୍ତୃପକ୍ଷଙ୍କ ଦ୍ୱାରା ଦିଆଯାଇଥିବା ହାଇସ୍କୁଲ ସାର୍ଟିଫିକେଟ୍ କିମ୍ବା ଅନୁରୂପ ପ୍ରମାଣପତ୍ର ଥିଲେ ଏଣିକି ଆବାସିକ ସାର୍ଟିଫିକେଟ୍‌ର ଆବଶ୍ୟକତା ପଡ଼ିବ ନାହିଁ ।

## ଭାରତ ଖବର

୨୨ । ୮– ବରିଷ୍ଠ କଂଗ୍ରେସ ନେତା ଗୁରୁଦାସ କାମାଥ୍‌ଙ୍କର ୬୩ ବର୍ଷରେ ପରଲୋକ । ଲୋକସଭା ସାଂସଦ ଭାବେ ସେ ୫ଥର ନିର୍ବାଚିତ ହୋଇଥିଲେ ।

୨୫ । ୮– ଲବ୍ଧପ୍ରତିଷ୍ଠ ମହାକାଶ ବିଜ୍ଞାନୀ ଜି ସତୀଶ ରେଡ୍ଡି ପ୍ରତିରକ୍ଷା ଗବେଷଣା ଉନ୍ନୟନ ଗବେଷଣା ଓ ଉନ୍ନୟନ ପ୍ରତିଷ୍ଠାନ (ଡି.ଆର୍.ଡିଓ)ର ମୁଖ୍ୟ ଓ ପ୍ରତିରକ୍ଷା ଗବେଷଣା ଉନ୍ନୟନର ମୁଖ୍ୟ ବିଭାଗ-ସଚିବ ଭାବେ ନିଯୁକ୍ତ ।

୨୮ । ୮– କେନ୍ଦ୍ର ସରକାରୀ କର୍ମଚାରୀଙ୍କର ମହଙ୍ଗା ଭତ୍ତା ଏବଂ ପେନ୍‌ସନ୍ ଭୋଗୀଙ୍କ ପାଇଁ ମହଙ୍ଗା ଭତ୍ତାରେ ଶତକଡ଼ା ଦୁଇ ପ୍ରତିଶତ ବୃଦ୍ଧି ।

୪ । ୯– ସୁପ୍ରିମ୍ କୋର୍ଟର ବରିଷ୍ଠ ବିଚାରପତି ରଂଜନ ଗୋଗଇଙ୍କୁ ପ୍ରଧାନ ବିଚାରପତି ପଦ ଲାଗି ସୁପାରିଶ୍ ।

୪ । ୯– କର୍ଣ୍ଣାଟକର ପୌର ନିର୍ବାଚନରେ କଂଗ୍ରେସର ବିଜୟ ହାସଲ ।

୬ । ୯– ଭାରତୀୟ ଆଇନ୍ ବିଚାର ବିଭାଗରେ ନୂତନ

( ଅବଶିଷ୍ଟାଂଶ ୫୦ ପୃଷ୍ଠାରେ )

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075



## ଡଃଏପିଜେ ଅବ୍ଦୁଲ୍ କଲାମଙ୍କର ବହୁମୂଲ୍ୟ ବକ୍ତବ୍ୟର କିୟଦଂଶ

୩୦୦୦ ବର୍ଷର ଇତିହାସ । ଆମର ଭାରତବର୍ଷକୁ ପୃଥିବୀର ବିଭିନ୍ନ ଦେଶର ଜନସମୂହ ଆସିଛନ୍ତି, ଅଧିକାର କରିଛନ୍ତି, ଲୁଟ୍‌ପାଟ୍ କରିଛନ୍ତି, ତା' ସହିତ ଜୟ କରିଛନ୍ତି ଆମର ମାନସିକତାକୁ ।

ଆଲୋକ୍‌ଜାଣ୍ଡରଙ୍କ ଠାରୁ ଗ୍ରୀକ୍, ତୁର୍କ, ମୋଗଲ, ପର୍ତ୍ତୁଗୀଜ୍, ବ୍ରିଟିଶ, ଫ୍ରାନ୍ସ, ଡଚ୍ ଇତ୍ୟାଦି ଲୁଟିଛନ୍ତି ଆମର ଗୌରବ, ଐତିହ୍ୟ, କଳା, ସ୍ଥାପତ୍ୟ– ସବୁ କିଛି; ମାତ୍ର ଆମେ ? ଆମେ ପୃଥିବୀର କୌଣସି ଜାଗାକୁ ଯାଇ ଅଧିକାର କରିନୁ । ତାହା ଐତିହ୍ୟ, କଳା, ସଂସ୍କୃତି ଭିତରେ ଆମେ ମୁଣ୍ଡ ଭର୍ତ୍ତି କରିନୁ । କାରଣ ? କାରଣ ଆମେ ଅନ୍ୟ ଦେଶର ସ୍ୱାଧୀନତାକୁ ସମ୍ମାନ ଦେଇ ଜାଣୁ ।

ସେଇଥିପାଇଁ ମୋର ସ୍ୱପ୍ନ ହେଲା ସ୍ୱାଧୀନତା । ୧୮୫୭ର ବିଦ୍ରୋହ ଥିଲା ପ୍ରଥମ ସ୍ୱାଧୀନତାର ଯୁଦ୍ଧ । ତାହା ହିଁ ଆମକୁ ଦେଇଥିଲା ନିଜକୁ ରକ୍ଷା କରିବାର, ପ୍ରତିଷ୍ଠା କରିବାର, ନିଜର ଯତ୍ନ ନେବାର, ନିଜକୁ ଜାଗ୍ରତ କରିବାର ମାନସିକତା ।

ମୋର ଦ୍ୱିତୀୟ ସ୍ୱପ୍ନ ଥିଲା ଉନ୍ନତ ଭାରତ । ୫୦ ବର୍ଷ ଧରି ତ ଆମେ ନିଜକୁ ଏକ ଉନ୍ନତ ରାଷ୍ଟ୍ର ଭାବରେ ପ୍ରତିଷ୍ଠା କରିସାରିଛୁ । ଜିଡିପି ଅନୁସାରେ ଆମେ ହେଉଛୁ ପୃଥିବୀର ୫ଟି ଉନ୍ନତ ଦେଶ ମଧ୍ୟରୁ ଅନ୍ୟତମ । ଶତକଡ଼ା ୧୦ ପ୍ରତିଶତ ହିସାବରେ ଆମ ଦେଶ ଉନ୍ନତି ଆଡ଼କୁ ଅଗ୍ରସର ହେଉଛି । ଦାରିଦ୍ର୍ୟ ହାର କମୁଛି । ଆମର କାର୍ଯ୍ୟଦକ୍ଷତା ସାରା ପୃଥିବୀର ଦୃଷ୍ଟିକୁ ଆକର୍ଷିତ କରୁଛି । ତଥାପି କ'ଣ ଅଭାବ ରହୁଛି ଯେ ଆମେ ନିଜକୁ ଏକ ଉନ୍ନତ ରାଷ୍ଟ୍ର ହୋଇ ମଧ୍ୟ ଆତ୍ମନିର୍ଭରଶୀଳ, ଆତ୍ମବିଶ୍ୱାସୀ ହୋଇପାରୁନୁ ?

ଶେଷରେ ମୋର ସ୍ୱପ୍ନ ହେଲା ଭାରତ ଦୃଢ଼ ଭାବେ ଠିଆହେଉ । କାରଣ ମୁଁ ବିଶ୍ୱାସ କରେ ଯେ ଭାରତ ଦୃଢ଼ ଭାବେ ଠିଆ ହୋଇ ନ ରହିଲେ, କେହି ତାକୁ ସମ୍ମାନ ଜଣାଇବେ ନାହିଁ । ଦୃଢ଼ତା ହିଁ ଦୃଢ଼ତାକୁ ସମ୍ମାନ ଦେଇପାରେ । କେବଳ ନିଜର ସୁରକ୍ଷାର ଦୃଢ଼ତା ନୁହେଁ, ଆର୍ଥିକ ସ୍ଥିତିର ମଧ୍ୟ ଦୃଢ଼ତା ଆବଶ୍ୟକ । ଦୁଇଟି ଜିନିଷ ପାଖାପାଖି ଗତିଶୀଳ ରହିବା ଦରକାର ।

ମୋର ଭାଗ୍ୟ ଯେ ମୁଁ ତିନିଜଣ ମହାନ୍ ବ୍ୟକ୍ତିତ୍ୱଙ୍କ ସାହଚର୍ଯ୍ୟରେ କାମ କରିଛି । ଭାରତ କେବଳ ଏକ ଉନ୍ନତ ରାଷ୍ଟ୍ର ନୁହେଁ, ଏହା ଉନ୍ନତ ରାଷ୍ଟ୍ର ମଧ୍ୟରେ 'ଏକ' ହୋଇ ଗଣା ହେବା ବଡ଼ କଥା । ଅଗ୍ନି କ୍ଷେପଣାସ୍ତ୍ର ଯୋଗୁଁ ଏକ ଉନ୍ନତ ଧାତୁର ଉଦ୍ଭାବନ ହୋଇପାରିଲା– ଯାହାକି ଖୁବ୍ ହାଲ୍‌କା କାର୍ବନ । ଥରେ ଅସ୍ଥିଶଲ୍ୟ ବିଭାଗର ଜଣେ ଡାକ୍ତର ମୋର ଗବେଷଣାଗାରକୁ ଆସି ଏହି ହାଲ୍‌କା ଧାତୁକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ମୋତେ କହିଲେ, ଡାକ୍ତରଖାନାକୁ ଚାଲନ୍ତୁ ।

ସେଠାରେ ଖୁବ୍ ଛୋଟ ଛୋଟ ପୁଅ, ଝିଅ ତାଙ୍କର ଗୋଡ଼ରେ ତିନି କିଲୋ ଓଜନର କ୍ୟାଲିପର୍ ଲଗାଇ ଭାରି

ଯନ୍ତ୍ରଣା ପାଉଥିଲେ । ଚାଲିବୁଲି ପାରୁ ନ ଥିଲେ । ଡାକ୍ତରଜଣଙ୍କ ସେହି ପିଲାମାନଙ୍କୁ ଦେଖାଇ ମୋତେ କହିଲେ, "ଦୟାକରି ସେମାନଙ୍କ ଗୋଡ଼ରୁ ହଟାଇ ଦିଅନ୍ତୁ ।'' ତା'ପରେ ଆମେ ୩୦୦ଗ୍ରାମ୍‌ର କ୍ୟାଲିପର୍ ସେଠାରେ ଯୋଗାଇଦେଲୁ । ପିଲାମାନେ ଏହାକୁ ଦେଖି ବିଶ୍ୱାସ କରିପାରିଲେ ନାହିଁ । ସେମାନଙ୍କ ଜୀମାତାଙ୍କ ଆଖିରେ ଲୁହ ଆସିଗଲା । ସେମାନେ ଏହି ହାଲ୍‌କା କ୍ୟାଲିପର୍‌କୁ ଧରି ଆରାମରେ ଚଲାବୁଲା କରୁଥିଲେ । ଏହା ମୋ ପାଇଁ ଥିଲା ଏକ ଆଶୀର୍ବାଦ ।

ଆମେ ଭାରତୀୟ ଦୁଗ୍ଧ ଉତ୍ପାଦନରେ ପ୍ରଥମ । ରିମୋଟ୍ ବା ସ୍ୱୟଂଚାଳିତ ଉପଗ୍ରହ ପ୍ରେରଣରେ ପ୍ରଥମ । ଗହମ ଓ ଚାଉଳ ଉତ୍ପାଦନରେ ଦ୍ୱିତୀୟ । ଏତେ ଉନ୍ନତ ରାଷ୍ଟ୍ର ହୋଇ ମଧ୍ୟ ଆମେ କାହିଁକି ସର୍ବଦା ଦୁର୍ବଳତା, ହତାଶା, ହିଂସା ଓ ଅପରାଧର ଖବର ପଢ଼ିବାକୁ ଭଲପାଉ ? କାହିଁକି ଆମେ ଏତେ ନକରାତ୍ମକ ? ଆଉ ଗୋଟିଏ କଥା ହେଲା– ଆମ ଜାତି କାହିଁକି ଏତେ ବିଦେଶ ପ୍ରିୟ ? ଆମ ଚାହୁଁ ବିଦେଶୀ ଟିଭି, ଘଣ୍ଟା, ସାର୍ଟ, ବିଦେଶୀ ଜ୍ଞାନକୌଶଳ । କାହିଁକି ବିଦେଶରୁ ଆମଦାନୀ ହେଉଥିବା ଜିନିଷକୁ ଏତେ ଭଲପାଉ ? ଆମେ କ'ଣ ଜାଣୁନା ଯେ ନିଜର ମର୍ଯ୍ୟାଦା ଆସେ ନିଜ ପ୍ରତି ବିଶ୍ୱାସରୁ । ଜଣେ ୧୪ ବର୍ଷର ଝିଅ ମୋର ଦସ୍ତଖତ ନେବାକୁ ଚାହିଁଲା । ମୁଁ ତାକୁ ପଚାରିଲି– ତୋ'ର ଜୀବନର ଲକ୍ଷ୍ୟ କ'ଣ ? ସେ ଉତ୍ତର ଦେଲା– ମୁଁ ଏକ ଉନ୍ନତ ଭାରତରେ ବାସ କରିବାକୁ ଚାହେଁ । ସେଇମାନଙ୍କୁ ଏକ ଉନ୍ନତ ରାଷ୍ଟ୍ର ଆମକୁ ଦେବାକୁ ପଡ଼ିବ । ଆମେ ଉନ୍ନତ ରାଷ୍ଟ୍ର ହିସାବରେ ନିଜକୁ କାହିଁକି ସ୍ୱୀକାର କରିବାକୁ କୁଣ୍ଠାବୋଧ କରୁଛୁ ? କାହିଁକି ଆମର ଗଣମାଧ୍ୟମ ଏତେ ନକରାତ୍ମକ ? ସେମାନେ ସତ୍ୟ ଏବଂ ସକରାତ୍ମକ ଖବର ଜନସାଧାରଣଙ୍କୁ ଜଣେଇବାକୁ କାହିଁକି ବୀତସ୍ପୃହ ? ଖବରକାଗଜ ମାଧ୍ୟମ ଦ୍ୱାରା ଆମେ ଦେଶ, ରାଜ୍ୟର ଖବର ପାଉ । ହତ୍ୟା, ଲୁଣ୍ଠନ, ଧର୍ଷଣର ଖବର ପ୍ରଥମେ ଛାପିବା ପାଇଁ ଆମେ ଏତେ ବ୍ୟଗ୍ର କାହିଁକି ?

(ବାକି ଆରଥରକୁ)

## ଶିଶୁକିଶୋର ପତ୍ରିକା 'ସଂସାର'ର ୬୫ତମ ବାର୍ଷିକ ଉତ୍ସବ

**ଚଳିତ ବର୍ଷ ଅକ୍ଟୋବର ୨୮ ତାରିଖରେ ଶ୍ରୀରାମଚନ୍ଦ୍ର ଭବନ, କଟକ ଠାରେ 'ସଂସାର' ପତ୍ରିକାର ୬୫ତମ ବାର୍ଷିକ ଉତ୍ସବ ଅନୁଷ୍ଠିତ ହେବ ।**

**ପ୍ରତିବର୍ଷ ପରି ସଂସାରର ତିନିଜଣ କୃତୀ ଲେଖକଙ୍କୁ ସମ୍ମାନ ପ୍ରଦାନ କରାଯିବା ସହିତ ଆଜୀବନ ଲେଖକୀୟ ସେବା ସହଯୋଗ ପାଇଁ ଜଣେ ଲେଖକଙ୍କୁ 'ସଂସାର ସମ୍ମାନ' ପ୍ରଦାନ କରାଯିବାର ସ୍ଥିର କରାଯାଇଛି ।**

**ଏହି ଉତ୍ସବକୁ ସଫଳ କରିବା ପାଇଁ ଆମର ସଂସାର ପ୍ରେମୀ ବନ୍ଧୁ, ଶୁଭେଚ୍ଛୁ, ପାଠକ ପାଠିକା ତଥା ଏଜେଣ୍ଟ ଓ ଗ୍ରାହକମାନଙ୍କର ଉପସ୍ଥିତି କାମନା କରୁଛୁ ।**

**--ସଂପାଦିକା**